# ବାଣୀ ନିର୍ଝରିଣୀ



**ବାଣୀ ପୁତ୍ର**

## ଲଲାଟେନ୍ଦୁ କବିଙ୍କ କବିତାରୁ କିଛି

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

# ବାଣୀ ନିର୍ଝରିଣୀ

## ପୁସ୍ତକ ସମ୍ବନ୍ଧରେ ରଚୟିତାଙ୍କ ମନ୍ତବ୍ୟ

ପିଲାବେଳେ କିଛି ଲେଖୁଥିଲି | ମୋ ଦେଇ ସାହିତ୍ୟ ହେବ ନାହିଁ ବୋଲି ୧୯୭୬ ରେ ଲେଖଛଡି ଦେଇଥିଲି | ଅବସରପ୍ରାପ୍ତ ଜୀବନରେ ପୁଣି ପଶିଲି ସାହିତ୍ୟରେ ୨୦୧୪ ମଧ୍ୟଭାଗରେ |

ଦେଖିଲି ଆମେ ଓଡିଆ ବୋଲି ଗର୍ବ କରିବା ଲୋକ ତ ପ୍ରାୟ ସମସ୍ତେ | ହେଲେ ଶୁଦ୍ଧ ଓଡିଆ  ବୁଝିବା କି ଲେଖିବା ଲୋକ ଅଳ୍ପ | ଆମ ଭାଷାର ଅନେକ ସୁନ୍ଦର ଶବ୍ଦ ସଢୁଚି | କିଛି ଦିନ ପରେ ହୁଏ ତ ସେସବୁ ବିଲୁପ୍ତ ହେଇ ଯିବ |

ଏଣୁ ମୋର କେତେକ ଲେଖାରେ ସୁନ୍ଦର ତତ୍ସମ ଶବ୍ଦ ଗୁଡିଏ ଖୋଜି ଖୋଜି ବ୍ୟବହାର କରିଛି | ଏ ସବୁ ଶବ୍ଦ ମୁଁ ଯେଉଁ ଅର୍ଥରେ  ପ୍ରୟୋଗ କରିଛି ତାହା ଲେଖି ଦେଇଛି  | ଯେ କେହି ଚାହିଁଲେ ଏ ସମସ୍ତ ଓ ଏ ଭଳି ଅଗଣିତ ଶବ୍ଦ http://spokensanskrit.de/ ରେ ପାଇଯିବେ |

ବିନୀତ

ଲଲାଟେନ୍ଦୁ କବି

## -: ସର୍ବ ବ୍ରହ୍ମମୟ :- -୧

ଅର୍ପଣାଦି ବ୍ରହ୍ମ, ବ୍ରହ୍ମ ଅଗ୍ନିହବ୍ୟକର୍ତ୍ତା, ବ୍ରହ୍ମାହୂତି |
ବ୍ରହ୍ମକର୍ମସମାଧିସ୍ଥ ବ୍ରହ୍ମପ୍ରାପ୍ତ, ବ୍ରହ୍ମେ ଗତିସ୍ଥିତି ||

ପୂଜ୍ୟ ପୂଜକ ପୂଜନ ପୂଜାବିଧି ପୂଜା-ଉପଚାର
ଯଜ୍ଞ ଯଜ୍ଞୀ ଯଜମାନ ଯଜ୍ଞଶେଷ ଯଜ୍ଞପରିସର ||

ସ୍ତବ ସ୍ତାବ୍ୟ ସ୍ତବପାଠ ସ୍ତବଶ୍ରୋତା ସ୍ତବ-ଶ୍ରୋତ୍ରେନ୍ଦ୍ରିୟ
ସ୍ତାବକ, ସ୍ତବନିର୍ଘୋଷେ ସ୍ତବାକାଶ, ସର୍ବ ବ୍ରହ୍ମମୟ ||

ଦ୍ରବ୍ୟଯଜ୍ଞ ତପୋଯଜ୍ଞ ଯୋଗଯଜ୍ଞ ଯାନଯଜ୍ଞ ତଥା
ସ୍ୱାଧ୍ୟାୟାଦି ନାନା ଯଜ୍ଞ, ସର୍ବଯଜ୍ଞେ ସର୍ବମୟ କର୍ତ୍ତା ||

—ଶେଷ—

## ଯୋଗରୁ କୈବଲ୍ୟ -୨

ଇନ୍ଦ୍ରିୟ ଅଧୀନେ ରହିଥିବା ଯାଏ ମନ,
ମିଥ୍ୟା ସୌନ୍ଦର୍ଯ୍ୟ ରେ ଲଭୁଥିବ ବିମୋହନ || -୧-

ସ୍ୱାଧ୍ୟାୟ ସତ୍ସଙ୍ଗ ଲାଗି ଥାଉ ସବୁ ଦିନ |
ଦିନେ ତ ଆସିବ ସେହି କୈବଲ୍ୟ ର ଦିନ || -୨-.

ଅବିଦ୍ୟା ଅସ୍ମିତା, ରାଗ, ଦ୍ୱେଷାଭିନିବେଶ,

ସଂପୂର୍ଣ୍ଣ ବିଲୁପ୍ତ ହେବେ ଏହି ପଞ୍ଚକ୍ଲେଶ |  -୩-

ହେବ ନାହିଁ କର୍ମ ନ ରହିବ କର୍ମାଶୟ |
ସ୍ୱରୂପ ଦର୍ଶନେ ହେବ ପୂର୍ଣ୍ଣ ଜ୍ଞାନୋଦୟ ||  -୪-

ଏ ମନ ପାଲଟି ଯିବ ଯେବେ ନିସ୍ତରଙ୍ଗ,
ଦୂରେ ଯିବେ ଗୁଣତ୍ରୟ ଛାଡି ଏହା ସଙ୍ଗ ||  -୫-

କ୍ରିୟା ହେବ କର୍ମହୀନ ନ ଫଳିବ ଫଳ |
ଯୋଗୀର ଲକ୍ଷଣ ଏହା: କର୍ମର କୌଶଳ ||  -୬-

—ଶେଷ—

## ନବକବି -୩

ନବଯୁଗେ ନବଭାବେ ଜାଗ ନବକବି
ଉତ୍କଳ ସାହିତ୍ୟାକାଶେ ଆସୁ ନବରବି
ଯାଉ ପ୍ରଗଳ୍ଭ ପ୍ରଳାପ  କର ବିଶୁଦ୍ଧ ସଂଳାପ
ଆଶ୍ରା କର ସରସ୍ୱତୀ ପବିତ୍ର ପୟରେ
ଅପତତ୍ତ୍ୱ ଅପଭାଷା ପଳାଉ ଭୟରେ |

ଉତ୍କଳଜନନୀଜାତ ସୁଯୋଗ୍ୟ ସନ୍ତାନ
ତେଜି ଗ୍ଳାନି ଅବସାଦ ତେଜି ଅଭିମାନ
ହେଜି କର୍ମ ଆବାହନ  ସ୍ଥିର ଚିତ୍ତେ କରି ଧ୍ୟାନ
ଉତ୍କଳଭାରତୀ ମଥା କର ଉତ୍ତୋଳିତ
ଏ ଭୂମି ଗାରିମା ହେଉ ଭୁବନବିଦିତ |

ଦେଶ କାଳ ଭାଷା ଜାତି ଭେଦ ଯାଅ ଭୁଲି

ସୁମିଷ୍ଟ ସାହିତ୍ୟ ପଢ ରାତ୍ରିଦୀପ ଜାଳି
ନୀତି-ଧର୍ମ-ବାଣୀ ପାଠ           କରି ହୁଅ ଯୋଗ୍ୟ ସୁତ;
ବିଶୁଦ୍ଧ ଭାବନା କର ଚୌଦିଗେ ପ୍ଲାବିତ,
ହେଉ ଏ ଜଗତ ଋଦ୍ଧିମନ୍ତ ପୁଣ୍ୟପୁତ |

## ତରୁଣ ସାହିତ୍ୟକାରଙ୍କୁ   -୪

କିଏ କହେ ମୋତେ ଦରଦୀ,
କିଏ ଶବ୍ଦ ଖେଳାଳୀ
ମୁଁ ତ ଦୀନଜନ ଅଗଣା ଘାସ
ସେହି ମୋ ମାଳୀ ||      -୧

ପିନ୍ଧାଅ ନା ମୋତେ ମାଳା କି
ଦିଅ ନାହିଁ ଉପାଧି
ଶରଧାରଣିରେ ବାନ୍ଧ ହେ
କରି ନଜରବନ୍ଦୀ ||      -୨

ବୁଝି ନ ପାରିଲେ କହିବ
ସବୁ ଦେବି ବୁଝାଇ
ତୁମେ ବୁଝିଲେ ଲେଖୁଛି
କହ ମୁଁ କାହା ପାଇଁ ?      -୩

ପୁଅ ଝିଅ କେହି ଡର ନା
ମୋତେ, ଥିଲେ ସଂଶୟ
ପଚାରିବ ମୋତେ ମୋ ଲେଖା
ବୁଝାଇବି ନିଶ୍ଚୟ ||      -୪

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ତୁମ ଲେଖା ଯଦି ନ ବୁଝି
  କିଏ ଦିଏ ପଚାରି
ଆଦରେ ତାହାକୁ ବୁଝାଇ
  ଦିଅ ଶରଧା କରି ||   -୫

ଏହି ଛୋଟ କଥା ରଖିବ
  ମୋର ନ କରି ରାଗ
ଅଢ଼େଇ ଦିନିଆଁ କାଳକ
  କଟୁ କରି ସରାଗ ||   -୬

ଜାଣ କେତେ ଦେଲ, ପାଇଲ
  କେତେ ଭାବ ନା ମନେ
ମାଗ କି ନ ମାଗ ମିଳିବ
  ଯାହା ଅଛି କରମେ ||   -୭

ଲେଖି ଲେଖି ଚାଲ ମନକୁ
  ସ୍ୱଚ୍ଛ କରି ତରୁଣ
ଭାବ ଅନୁକୂଳ ଶବଦ ଖୋଜ,
  ଧର କଲମ ||   -୮
  --ଶେଷ—

## ପକ୍କା ଗାଉଁଲୀ ଝିଅ   -୫

ସାଙ୍ଗଟାଏ ବୋଲି ଥଟ୍ଟା କରିଦେଲି, ଏଡ଼ିକି ଉଗୁରି ସିଏ?
ପଦିଏ ପଦିଏ ଇଂରାଜୀ ମିଶେଇ ହାତ ଝାଡ଼ି ଦେଉ ଥାଏ !   -୧-

ହେଲା, ଏକା ମାଘେ ଶୀତ ଯାଏ ନାହିଁ -- ବୁଝିଯିବ ଦିନେ ସିଏ;
ଯେଡ଼େ ବଡ଼ ବାଘ ମାମୁଁ ହେଲେ ଫାଗ ନାମ ଶୁଣୁଣି ଡରି ଯାଏ |  -୨-

ବଡ଼ଲୋକ ବୋଲି ଉତ୍ତର ନ ଦେଲି -- ସ୍ୱର୍ଗକୁ ନାହିଁ ନିଶୁଣି,
କେଡ଼େ ସହରୀଟା ? କହୁଛି ଏ ଗାଆଁ ଝିଅ ନାକରେ ସିଙ୍ଗାଣି !     -୩-

କଚାଡ଼ିବ ଗୋଡ଼, ମୁଦି ନାହିଁ ତା'ର -- ହାତକୁ ଛିଞ୍ଚାଡ଼ି ଦେଲା;
ଫମ୍ପା ମାଠିଆର ଶବଦ ବେଶୀ ଲୋ ହାତେ ପଟେ ନେଖା ବଳା |  -୪-

ଟିକିଏ କଥାକୁ ବଢ଼େଇ ଚଢ଼େଇ କେଡ଼େ ସେ କରୁଛି ଗୋଳ;
ଘାଇଁ ଘାଇଁ ଖାଲି ବିଞ୍ଚଣାର ନଳୀ, ତିଳକୁ କରୁଛି ତାଳ |          -୫-

ବଡ଼ଘର ବଡ଼ ଗୁମର ଜାଣେ ମୁଁ ଖୋଲିଦେବି ଦିନେ କଥା,
ଅଣ୍ଟି ଛୁରୀ ହେଇ ତଣ୍ଟି ତୁ କାଟିଛୁ, ଟେକି ପାରିବୁନି ମଥା |         -୬-

ଆକାଶ କଇଆଁ ଚିଲିକାର ମାଛ ଦେଖେଇବୁ ଆଉ କେତେ ?
ବୁଡ଼ିଗଲା ଗୋଡ଼ ତଳକୁ ତଳକୁ, ଚଖେଇବି ପାନେ ତୋତେ |       -୭-

ହାତଟେ ମାପିକି ଚାଖଣ୍ଡେ ଚାଲୁଥା କେଡ଼େ ତୁ ସହରୀ ଝିଅ,
ମୁଁ ବି ଗାଁ ଟୋକୀ, ଜମା ଜାଣିନୁ କି ଖରାଖିଆ ମୋର ଧିଅ ?       -୮-

ତିନିତୁଣ୍ଡ କରି ଛେଳିକୁ କୁକୁର କରୁଛୁ ଏଢ଼େ ସାହସ,
ଓଠରେ ତେଲ ତୁ ବସିଥା ମାରିକି, ଗଛରେ ଥାଉ ପଣସ |          -୯-

ପକ୍କା ଓଡ଼ିଆଣୀ ବୋଲି ସବୁ ଶୁଣି ଆଜି ସିନା ଗଲି ସହି
ଗାଆଁ ପୋଖରୀକୁ ଚାତୁରୀ ଦେଖାଏ ଅଙ୍କାବଙ୍କା ଶୁଖା ନଈ |       -୧୦-

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଜାଣିନୁ, ସହରୀ ପିଅନବାବୁଟା ଦେଇଛି ମୋତେ ଲାଇନି ?
ସହରିଆ ବର ବାହା ହେଲେ ଥରେ ପଢ଼େଇ ଦେବି ଆଇନି |      -୧୧-

ସାତ ଚକଟାକୁ ପାଲୁଅ ଘଣ୍ଟା ମୁଁ
ବୁଦ୍ଧୁତିଭୂଷଣ ଦି'ଗାଲି କଟା;
ଚିଲ ପ୍ରସାଦରୁ ବ୍ରହ୍ମାଣ୍ଡ ବୁଲିଛି,
ମୋତେ ଦେଖାଉଛୁ ବଇଁଶି କଣ୍ଟା ??    =ଇତି ଶାନ୍ତିଃ=

## କର୍ଣ୍ଣବୀର ପଦ୍ମାବତୀ ପ୍ରତି      -୬

ଦେଖ ପ୍ରଣୟିନୀ      ଯାଉଛି ଯାମିନୀ
    ହରଷେ ମେଲାଣି ଦିଅ ସତ୍ୱରେ
ଯାଇ ନଦୀକୂଳେ      ଚିର ପ୍ରିୟ ସ୍ଥଳେ
    ସୂର୍ଯ୍ୟୋଦୟ କାଳେ ପିତୃପୟରେ      -୧

ବେନି ହସ୍ତ ତୋଳି      ଦେବି ଜଳାଞ୍ଜଳି
    ଆଶୀର୍ବାଦ ଅଳି କରିବି ତହିଁ
ଧର୍ମଯୁଦ୍ଧଧାମେ      ଅର୍ଜୁନ-ସଂଗ୍ରାମେ
    ମହା ପରାକ୍ରମେ ହେବ ଲଢାଇ |      -୨

ସୁପୂଜିତ ତୀର      ପ୍ରତ୍ୟଞ୍ଚା ଟଙ୍କାର
    ରଣଭେରୀ ସ୍ୱର ଦେବ ହଜାଇ
ମୋ ଶୌର୍ଯ୍ୟ ସାହସ      ହେବ ଇତିହାସ;
    ଶତ ଉପହାସ ମୁଁ ଭୁଲି ନାହିଁ |      -୩

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଅର୍ଦ୍ଧଦଶ ପୁତ                    ଯେଉଁ କୁନ୍ତୀସୁତ
        ଯୁଦ୍ଧେ ମୋ ସହିତ କରିବେ ରଣ
ତନ୍ମଧ୍ୟରୁ ଚାରି                   ନ ପାରିବି ମାରି
        ମିଥ୍ୟାଚାର କରି, ଦେଇ ବଚନ |        -୪

କବଚ କୁଣ୍ଡଳ                    ନେଲେ କରି ଛଳ
        ଅର୍ଜ୍ଜୁନବତ୍ସଳ ଇନ୍ଦ୍ରରାଜନ
ତଥାପି ସଂଗ୍ରାମୀ,             ଛାଡି ଯୁଦ୍ଧଭୂମି
        ପ୍ରାଣରକ୍ଷାକାମୀ ନୁହଇ କର୍ଣ୍ଣ |         -୫

ସଂଗ୍ରାମୀ ଦୁଃସହ              ଭୀଷ୍ମ ପିତାମହ
        ଛଳେ ବିଦ୍ଧ-ଦେହ କଲେ ଶୟନ
ସର୍ବ ଯୁଦ୍ଧଜ୍ଞାତା                 ବିଦ୍ୟାଦାତା ପିତା
        ତାଙ୍କୁ କହି ମିଥ୍ୟା କଲେ ଛେଦନ |      -୬

ଭୂରିଶ୍ରବା-ବୀର-              ସାତ୍ୟକି-ସମର
        ଥିବାବେଳେ ଘୋର ଭୟେ ଅର୍ଜ୍ଜୁନ
ଦେଖି ଭୂରିଶ୍ରବା                ଏକଧ୍ୟାନ ଥିବା
        ତା' ଦକ୍ଷିଣ ଗ୍ରୀବା କଲେ ଖଣ୍ଡନ |      -୭

ଅର୍ଜ୍ଜୁନେ ଭର୍ତ୍ସନା               କରି ମହାମନା
        କଲେ ଉପାସନା ନିରସ୍ତ୍ରେ ବସି
ଏକହସ୍ତହୀନ                   ପ୍ରାଣ ବ୍ରହ୍ମଲୀନ
        ତଥାପି ସହନ ନ କରି ଅସି |          -୮

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

କରି ଉତ୍ତୋଳନ　　　ମସ୍ତକବିହୀନ
　　କଲେ କେଡେ ହୀନ 'ସାତ୍ୟକି ବୀର' !
କେଡେ ଅପଯଶ !　　　ରଖ ହେ ବିଶ୍ୱାସ
　　ସେ ପାପ ସ୍ପରଶ ନ ହେବ ମୋର |　　-୯

ଏତେ ଅବିଚାର　　　ଧର୍ମର କୁମର
　　ରାଜା ଯୁଧିଷ୍ଠିର ପାରିଲେ ସହି
କିନ୍ତୁ ପ୍ରାଣପ୍ରିୟା　　　ରହିବ ନିର୍ଭୟା
　　ଅନୀତି ଛାୟା ମୁଁ ଛୁଇଁବି ନାହିଁ |　　-୧୦

ତୁମେ ପଦ୍ମବତୀ　　　ଥିବ ଚିରସତୀ
　　କର୍ଣ୍ଣ ତୁମ ପତି ମଲେ ସମରେ
କଥା ଦେଲି ଯାହା　　　ନିଃସଂଶୟ ପ୍ରିୟା
　　ଗଲେ ଯାଉ କାୟା ପାର୍ଥ ହସ୍ତରେ |　　-୧୧

ପ୍ରଭୁ ଭଗବାନ　　　ଯେଣୁ ବିଦ୍ୟମାନ
　　ଅର୍ଜୁନରକ୍ଷଣ ତାଙ୍କର ପଣ
ଥାଉଁ ବୀରପଣ　　　ଗଲେ ବି ମୋ ପ୍ରାଣ
　　ତାଙ୍କରି ବିଧାନ ଜାଣିବ ରାଣ |　　-୧୨

ନାହିଁ ପ୍ରାଣଭିକ୍ଷା ବୀରତ୍ୱପରୀକ୍ଷା
 ଦୁହିଙ୍କର ଶିକ୍ଷା ଜାଣ ଆମର;
କ୍ଷୁଦ୍ର ପୃଥିବୀରେ ଦୁଇ ମହାବୀରେ
 ଏକ ସମୟରେ - ଏ କି ବିଚାର ? -୧୩

ବ୍ରହ୍ମାଣ୍ଡକାରଣ ବାସୁଦେବ କୃଷ୍ଣ
 ସଙ୍ଗେ ସମ୍ଭାଷଣ ଗୋପନ କଥା
ଶୁଣ ମନ ଦେଇ ଆହେ ପୁଣ୍ୟମୟୀ
 ରଖିବ ଲୁଚାଇ ଏହି ବାରତା | -୧୪

କହିଲେ - ରାଧେୟ ନୁହେଁ, ତୁ କୌନ୍ତେୟ;
 ପୂର୍ଣ୍ଣ ପାପମୟ ସେ ଦୁର୍ଯ୍ୟୋଧନ
ତାକୁ ତ୍ୟାଗ କରି ପାଣ୍ଡବେ ଆଦରି
 କୌରବ ସଂହାରି ହୁଅ ରାଜନ | -୧୫

ଜଗଦୀଶ କଥା ନୁହେଁ ସେ ଅନ୍ୟଥା
 ହେଲା ବଡ ବ୍ୟଥା ଶୁଣି ବଚନ;
କହିଲି ବିନିତେ ଧୀରେ ଯୋଡହସ୍ତେ
 ଭବିଷ୍ୟେ କେମନ୍ତେ ହେବ କଥନ ? -୧୬

ଇଏ କି ପାତକ ? ବାନ୍ଧବଘାତକ
 ସାଜିବି, ମସ୍ତକ ପଡେ ଘୂର୍ଣ୍ଣନେ
କରି ପ୍ରତ୍ୟାଖ୍ୟାନ ଶ୍ରୀହରି ବଚନ
 କଲି ନିବେଦନ ବ୍ୟାକୁଳ ମନେ | -୧୭

ଶୁଣି କୃପାମୟ ଦେଲେ ଟି ଅଭୟ
ମୋର ପରିଚୟ ଗୁପ୍ତ ରଖିବେ
ଏ ହେଲେ ପ୍ରଘଟ ପାଣ୍ଡବ ସମ୍ରାଟ
ମୋତେ ଦେଇ ପାଟ ଯୁଦ୍ଧ ଛାଡିବେ | -୧୮

ଫଳ ହେବ ଶେଷେ ଅତ୍ୟନ୍ତ ଉଲ୍ଲାସେ
ଏ ଭାରତ ଦେଶେ ସେ ଦୁର୍ଯ୍ୟୋଧନ
ହେଲେ ମଧ ପାପୀ ସେ ମହା ପ୍ରତାପୀ
ଧରାଧାମ ବ୍ୟାପି ହେବ ରାଜନ | -୧୯

ଯେବେ ଧରାଶାୟୀ ଭୀଷ୍ମ ପାଶେ ଯାଇ
ମସ୍ତକ ଝୁକାଇ ସମସ୍ତ ବୀର
ସୂର୍ଯ୍ୟ ଅସ୍ତ ଗତେ ଦିବସର ଅନ୍ତେ
ବିଶ୍ରାମ ନିମନ୍ତେ ଗଲେ ଶିବିର | -୨୦

ମଥା ନତ କଲେ, ସଭିଏଁ ଫେରିଲେ,
ନେପଥ୍ୟେ ସେ ବେଳେ ଥିଲି ମୁଁ ଏକା,
ଆସି ତାଙ୍କ ପାଦ ପାଖେ ମୁଁ ନିର୍ବେଦ
ପୂର୍ଣ୍ଣ ନିଃଶବଦ କଲି ଅପେକ୍ଷା | -୨୧

ସେ ଅନ୍ଧାର କାଳେ ଯେବେ ପ୍ରଶ୍ନ କଲେ
ଆବାହନ କଲେ, କହିଲି ଭାଷା -
ରାଧେୟ ମୁଁ ସୂତ, ହେଲେ ଅନୁମତ
ଶ୍ରୀପଦେ ମୋ ହାତ ରଖନ୍ତି, ଆଶା | -୨୨

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ପିତାମହ ଶୁଣି ସସ୍ନେହ ଚାହାଣି
 ଦେଇ ଡାକି ଆଣି ମସ୍ତକ ପାଶ
କଲେ ଆଲିଙ୍ଗନ, ମସ୍ତକ ଚୁମ୍ବନ,
 ଗଦ୍ଗଦ ବଚନ କଲେ ସମ୍ଭାଷ | -୨୩

ନୋହୁ ସୂତପୁତ୍ର ତୁ ଯେ କ୍ଷାତ୍ରବୀର
 କୁନ୍ତୀର ଉଦର ଭିତରୁ ଜାତ
ଅନେକ ଲାଞ୍ଛନ କରିଛି ବହନ
 କିନ୍ତୁ ମୋର ମନ ତୋ ପ୍ରେମେ ରତ | -୨୪

ଦୁର୍ଯ୍ୟୋଧନ ଦୁଷ୍ଟ ଶକୁନି କପଟ
 ଦୁହିଁଙ୍କ ନିକଟ ଥିବାରୁ ତାତ !
ଏ ରାଜ୍ୟେ ତୋହର ନ୍ୟାଯ୍ୟ ଅଧିକାର
 ଥାଉଁ ଏ ସମର ରକତପାତ | -୨୫

କୃଷ୍ଣଙ୍କର ବାଣୀ ଯାହା ଥିଲି ଶୁଣି
 ସେହି କଥା ପୁଣି କହିଲେ ମୋତେ
ମଥା କରି ନତ କହିଦେଲି ସତ
 ମୋ ମନସଞ୍ଚିତ ଯାତନା ଯେତେ | -୨୬

ସେ ଦେଲେ ଆଶିଷ ଆନନ୍ଦେ ଅଶେଷ
 କିନ୍ତୁ ଅବଶୋଷ ରହିଲା ମୋର
ମହାବୀର ଯଶ କଲେ ତ ଆଶିଷ
 ନ କଲେ ସନ୍ଦେଶ ବିଜୟବର | -୨୭

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ପଦ୍ମାବତୀ ଶୁଣ           କପଟୀ ଶ୍ରୀକୃଷ୍ଣ
ଯେ କାର୍ଯ୍ୟ ଅର୍ଜୁନ ନ ପାରେ କରି--
ମଧୁଦୈତ୍ୟ ହତ୍ୟା           ଶିଶୁପାଳ ମଥା
ଏକଲବ୍ୟ କଥା ବୁଝିଲେ ହରି |        -୨୮

ଗୁରୁ ଦ୍ରୋଣାଚାର୍ଯ୍ୟ          ନୁହନ୍ତି ଅନାର୍ଯ୍ୟ
ବୃଦ୍ଧାଙ୍ଗୁଷ୍ଠି ଯୋଗ୍ୟ ଦକ୍ଷିଣା ନୁହଁ
ଜାଣି ସୁଦ୍ଧା ଏହା           ମାଗିଲେ ସେ ତାହା
ଗ୍ରାସିଥିଲା ମାୟା-କୃଷ୍ଣଙ୍କ ମୋହ |      -୨୯

ସେହି ସର୍ବାଧାର           ପରମ ଈଶ୍ଵର
କରନ୍ତି ପାର୍ଥର ରଥଚାଳନ
ପାଣ୍ଡବଭକତ             ଶଲ୍ୟଠି ମୋ ରଥ,
କରନ୍ତି ମୋ ସାଥ କଟୁବଚନ |         -୩୦

ହେଉ ପ୍ରତିକୂଳ            ସ୍ଥିତି, ଯୁଦ୍ଧସ୍ଥଳ
ଯିବି ମୋର ବଳ ଧର୍ମାଚରଣ
ରଣେ ଧନୁର୍ଦ୍ଧର            ମଲେ ସ୍ୱର୍ଗପୁର
ପାଇବ, ଅସ୍ଥିର ନ କର ମନ |         -୩୧

ପୁତ୍ରଶୋକ ବହ୍ନି            ଜଳାଉଛି ପୁଣି
ଆହେ ମହାରାଣୀ ମୋର ହୃଦୟ
ମାରେ ଅବା ମରେ          ମୋ ସଙ୍ଗେ ତ୍ରିପୁରେ
ତୁମ ନାମ ନରେ ନେବେ ନିଶ୍ଚୟ |      -୩୨

ସ୍ନାନ ଧ୍ୟାନ ସାରି          ଆସିଲେ ମୁଁ ଫେରି
        ଯିବି ଅଶ୍ୱ ଧରି ଶ୍ରେଷ୍ଠ ସଂଗ୍ରାମେ
ତିଳକ ଲଗାଇ          ଯୁଦ୍ଧକୁ ପଠାଇ
        ଦେବ ମହାଦେଇ ବୀରବିକ୍ରମେ |-୩୩

ଦ୍ୟୁତିମତି ପତି-          ବ୍ରତା ପଦ୍ମାବତୀ
        ଧର୍ମଦୃତୀ ସତୀ ବୋଲେ ଗମ୍ଭୀରେ
ଆସ ପୂଜା ସାରି          ମୋ ତିଳକ ମାରି
        ପାର୍ଥ ନ ସଂହାରି ନ ଫେର ଘରେ |     -୩୪

## ପ୍ରେମପୁଷ୍ପ          -୭

କେତେ ଫୁଲ ଫୁଟି          ଝଡିଲାଣି ଏଠି
        କଳନା କରିବ କିଏ ?
ନାନା ରଙ୍ଗେ ଭରା          ଫୁଲର ପସରା
        ନିତି ଏଠି ଫୁଟୁଥାଏ |          -୧

ତୋଳିନେଇ କିଏ          ପୂଜାରେ ଲଗାଏ
        କିଏ ବା ମଥାରେ ମାରେ,
କିଏ ତା ସୁବାସେ          ମୁଗ୍ଧ ହେଇ ଆସେ,
        ବସେ ମୁହଁ-ଅନ୍ଧକାରେ |          -୨

ବଇଁଶୀବାଦକ          ଗୋପାଳ ବାଳକ
        ଖରାବେଳେ ଏଠି ବସି
ସୁମଧୁର ତାନେ          ବିହ୍ୱଳିତ ମନେ
        ବଜାଏ କରୁଣ ବଂଶୀ |          -୩

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ସେଇ ଏକା ଫୁଲ		ଆସିଲେ ସକାଳ
	ସବୁଠାରେ ଥାଏ ଫୁଟି
ସବିଠୁ ସୁଢଳ		ଏଇ ଗଛ ଫୁଲ
	ନଦୀକୂଳେ କିନ୍ତୁ ଏଠି ।		-୪

ତାରକାଖଚିତ		କୁସୁମସଜ୍ଜିତ
	ଆକାଶପୃଥିବୀ ଶୋଭା
ଶରତଶର୍ବରୀ		ଚନ୍ଦ୍ରିକା ବିଚ୍ଛୁରି
	ବିଶେ ଏଠି ମନଲୋଭା ।		-୫

କାହିଁକି ଏମିତି		ଏଠାରେ ଏ ରୀତି
	କେହି ନ ପାରନ୍ତି ଜାଣି;
ବିଜନ ବେଳାରେ		ବିଧବା ବାଳାର
	ଏଇଠି ଶୂନ୍ୟ-ଚାହାଣି ।		-୬

ହେଲା କୁତୂହଳ,		ହେଲି ଅସମ୍ଭାଳ
	ରହସ୍ୟ ବୁଝିବି ବୋଲି
ଗଛଲତା ସଙ୍ଗେ		ଅତ୍ୟନ୍ତ ସରାଗେ
	ମନେମନେ କଥା ହେଲି ।		-୭

ମୋ ହୃଦୟ କଥା		ବୁଝି ଗୁଳ୍ମଲତା
	ଇସାରା କହିଲେ ଯାହା
ଯେମିତି ଶୁଣିଲି		ସ୍ଥାଣୁ ମୁଁ ଭାବିଲି –
	ଏ ମାଟି କି ସର୍ବଂସହା ?		-୮

ସେ କେଉଁ ପ୍ରେମିକା        ନବୀନା ବାଳିକା,
        ପ୍ରେମପାଗଳୀନି କାଳେ
ତା ପ୍ରେମିକ ସାଥେ  ଜୀବନ ଯାଆନ୍ତେ
        ଶୋଇଛି ଏ ମାଟି ତଳେ ।                -୯

ଦିବ୍ୟ ଦେବଦୂତ              ଆଣିଥିଲେ ରଥ
        ସରଗକୁ ନେବା ପାଇଁ
ସେ ପ୍ରେମୀ ଦି'ଜଣ କଲେ ପ୍ରତ୍ୟାଖ୍ୟାନ
        ବିନୟ ବଚନ କହି ।                -୧୦

ସେଦିନୁ ଏଠାରେ              ସୁପୁଷ୍ପ ସମ୍ଭାରେ
        ଭରି ଉଠୁଛି ବସୁଧା
ଆସନ୍ତି ଅନେକ,              ବହୁ ଗ୍ରାମ ଲୋକ,
        ପିଅନ୍ତି ସତେ କି ସୁଧା ।                -୧୧

ତୁମେ ବି ସେମିତି              ଏଇ ଫୁଲ କତି
        ନିତି ନିତି ଆସ ବୁଲି
ସେ ପ୍ରେମୀଯୁଗଳ              ଅତି ସୁକୋମଳ,
        ଧୀରେ ଆସ ପାଦ ଚାଳି ।                -୧୨

## ପତିହରାର ଗୀତି        -୮

ଆସୁଥିଲି ଯେବେ              ବାହୁଡି ସେଦିନ
        ତୁମ ଗାଁ ବାଲିଧୂଳି
ରହି ଯା ରହି ଯା              କହୁଥିଲେ କେତେ,
        କାନ୍ଦି କରୁଥିଲେ ଅଳି ।                -୧

ଆଖିର ଲୁହରେ ଛାତିର କୋହରେ
ବଚନ ଆସିଛି ଦେଇ
ପାଲିଙ୍କିରେ ତୁମେ ବସେଇ ଆଣିଲେ
ମନା ତ କରିବି ନାହିଁ | -୨

ଏ ଜୀବନେ ତୁମେ ଆଉ କି ଆସିବ
ଭାବିଲେ ଘୂରାଏ ମଥା
ତଥାପି ତୁମର ବାଟ ଚାହିଁଛି ମୁଁ
ତୁମ ଲାଜକୋଳି ଲତା | -୩

ରାଗିବନି ଜମା ପକାଉଛି ରାଣ
ତୁମେ ତ ଜୀବନ ସଖା
ଆଜି ଅବା କାଲି ଆସିଲେ ମୋ ପାଳି
ତୁମକୁ କରିବି ଦେଖା | -୪

ବଗିଚାରେ ପାଣି ମଡେଇବା ବେଳେ
ଦେଖିଲି ଦୁଇଟି ଫୁଲ
ଗୋଟିଏ ଝଡ଼ିଲା ଆରେକ ମଉଳା
ଦୁହେଁ କି ଅମୂଲମୂଲ | -୫

ମଉଳା ଫୁଲଟି ତଳକୁ ନିରେଖି
ଲୁହ ଚାପି କହୁଥାଏ
ଭେଟିବି ସହଳ, ମନେ ରଖ ବଳ
ମୋ ବେଳ ଆସିବା ଯାଏ | -୬

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଝରା ମେଘ ତୁମେ ଭାସିଲା ମେଘ ମୁଁ,
ଦିନେ ତ ପଡିବି ଝରି
ପାଦ ଚିହ୍ନ ଦେଖି ଯିବି ତୁମ ସଖୀ,
ତୁମରି ସାଗରବାରି | -୭

ଧରି ତୁମ ହାତ କରୁଛି ଶପଥ
ଚାଲିବି ତୁମରି ସାଥେ
ସାଗର ଉସଙ୍ଗେ ଉଚ୍ଛୁଳ ତରଙ୍ଗେ
ଦୟା-ପାରାବାର ପଥେ | -୮

## ପୂର୍ଣିମା ସନ୍ଧ୍ୟା -୯

ତମିସ୍ରତାରଣ ତରଣି ତନୁ ତନ୍ମୟ ଦିଶେ
ଗୈରିକ ଗିରିର ଗୌରବ ଶିରୀ ତା ଶିରେ ଭାସେ ||

ବିପରୀତେ ରୀତି ରାତିକେ ଦୁଇ ପକ୍ଷକେ ଥରେ
ଭାଙ୍ଗି ତନ୍ଦ୍ରାହୀନା ଚନ୍ଦ୍ରମା ରମେ ପ୍ରାଚୀ ଅମ୍ବରେ ||

ନିକାଞ୍ଚନେ ଏକା କେମନ୍ତେ ରବି ନେବ ସନ୍ନ୍ୟାସ
ସନ୍ତର୍ପଣେ ଶୁଭ୍ରବାସିନୀ କଷେ ମଉନୀ ହସ ||

ପ୍ରତାରି ବରିଦେ ଦୂରତେ ଲୁଚି ରହିବ କେତେ
ପତିବ୍ରତାହସ୍ତପତିତ ପତିଦେବତା ଅନ୍ତେ ||

{ଅନ୍ଧକାରହରଣକାରୀ ସୂର୍ଯ୍ୟଙ୍କ ଶରୀର ତନ୍ମୟ ଦିଶୁଅଛି | (ସୂର୍ଯ୍ୟାଲୋକଜନିତ)

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଗୈରିକ (ବର୍ଣ୍ଣ) ପର୍ବତର ଉଜ୍ଜ୍ୱଳତା ତା ଉପରେ ଶୋଭାଆପାଉଛି । ବିପରୀତ ଦିଗରେ ଦୁଇ ପକ୍ଷପରେ ଥରେ (ପୂର୍ଣ୍ଣିମାକୁ ପୂର୍ଣ୍ଣିମା) ନିୟମ ଭାଙ୍ଗି ଚନ୍ଦ୍ରମା (ସେହି ସୂର୍ଯ୍ୟାସ୍ତ ସମୟରେ) ଆକାଶରେ ବିଚରଣ କରୁଛି । ନିକାଞ୍ଚନରେ (ପତିର ଅଜ୍ଞାତରେ) ସୂର୍ଯ୍ୟ କେମିତି ବା ସନ୍ନ୍ୟାସ ନେବ? - (ଏହା ଭାବି) ସନ୍ତର୍ପଣରେ ସେ ମୌନରେ ହସୁଛି । (ପତ୍ନୀକୁ) ପ୍ରତାରଣା କରି, ଦୂରେଇ ଯାଇ କେତେ ବା ଲୁଚି (ଗୋପନ କାର୍ଯ୍ୟ କରି) ରହି ହେବ? ଶେଷକୁ ପତିବ୍ରତା ହାତରେ ପତିଦେବତା ଧରା ପଡୁଛନ୍ତି ।}

## ବର୍ଷା ଭାବନା -୧୦

ପରିଧିରେ ଧୀରେ ଧୀରେ ବାରିଧର ଧାରା
ଝରାଏ ରୁଧିର ଧାର ଉଦ୍ଧରିବ ଧରା ।-୧

ତଟିନୀର ନୀର ତୀର ତୀରଜ ତୁରଣ
ଉଲ୍ଲସିତ ଶୀତ ପାତେ ଶତ ଶିହରଣ ।-୨

ତପନ ବିଦାହେ ତ୍ରାତାତୁର ତରୀ ତୃଣ
ଶୂଥଶ୍ରାନ୍ତ ବ୍ୟଥା ମିତ ବାତେ ପ୍ରଶମନ ।-୩

ଅବ୍ଦ ଅନ୍ତେ ଶବ୍ଦ ପାତେ ଜଳଦନନ୍ଦିନୀ
ଉଗ୍ର ଗର୍ଜନେ ତର୍ଜନା ସର୍ଜେ ଉନ୍ମାଦିନୀ ।-୪

ତେଜି ଦିଶା ଅନ୍ତ ଧୂମକାନ୍ତ ଦୂରବାସୀ
ପାଶେ ଆସି ସୁଧାରାଶି ଦିଅ ହେ ବରଷି ।-୫

{ବାରିଧର= ଜଳଧର ବା ମେଘ; ରୁଧିର= ରକ୍ତ; ତୀରଜ= ନଦୀ [ଶୁଷ୍କ ହେଇ ଥିବାରୁ ତା'] ତୀରରେ ଜାତ [ଉଦ୍ଭିଦ]; ତୁରଣ= ଚଞ୍ଚଳ [ଚଞ୍ଚଳମନ]; ତ୍ରାତାତୁର= ତ୍ରାତ+ଆତୁର, [ଗ୍ରୀଷ୍ମଦାହ ହେତୁ] ରକ୍ଷାତୁର; ତରୀ= ଅନୁର୍ବର ଗାଈ (barren cow); ଶୂଥ= ଜ୍ୱଳନ; ଶ୍ରାନ୍ତ= ପୀଡ଼ିତ; ଶୂଥଶ୍ରାନ୍ତ=

ଜ୍ୱଳନପୀଡ଼ିତ; ବ୍ୟଥା ମିତ ବାତେ ପ୍ରଶମନ = [ସେମାନଙ୍କ] ବ୍ୟଥା ଧୀର ବାୟୁପ୍ରବାହରେ ପ୍ରଶମିତ [ହେଉଛି]; ଅବ୍ଦ ଅନ୍ତେ = ବର୍ଷ ଗତେ; ଜଳଦନନ୍ଦିନୀ= ମେଘ- କନ୍ୟା [ବିଜୁଳି]; ଦିଶା ଅନ୍ତ= ଦିଗନ୍ତ; ଧୂମକାନ୍ତ= ଧୂଆଁର କାନ୍ତିଯୁକ୍ତ [ମେଘ]; ଦୂରବାସୀ=[ଏବେ] ଦୂରସ୍ଥ; ସୁଧା=ଜଳ}

## କି ଦେଖିବ ଆଖି -୧୧

ନୀଳ ନଳିନୀ ନିଳୟେ ଅନଳ ଜାଳିଲା କିଏ ?
ଶିଶୁ ଆସ୍ୟେ ଶୁଚି ସୁରସ ଭାଷା କିଏ ସେ ଦିଏ ? -୧

ଅଣୁକ ମୁକୁଳ କୋଳେ କୁସୁମ କାହୁଁ ଆସିଲା ?
ଅଣୁ-କଳ୍ପ କ୍ଷୀଣ କଣୀକା କୋଳେ ବିଟପୀ ଥିଲା ? -୨

ଶାଖୀ ଶାଖା ଶିଖେ ନିଶୀଥେ କାହୁଁ ଶୀକର ଆସେ ?
ଉଦକ କଣିକା କରକା ସାଜି ଆକାଶୁ ଖସେ !! -୩

ଗୋପନେ କପୋଳେ କସ୍ତୁରୀ ଥାଏ, କଶ୍ୟପ ଖୋଜେ !
ଚଞ୍ଚଳା ଚପଳା ଚମକି ଚଳେ କେଉଁ ରାଇଜେ ? -୪

ସଞ୍ଜେ ସଞ୍ଜୀବତୀ ସଜାଏ ଯେବେ ଯୋଷିତା ରାଣୀ
ଦ୍ୟୁଲୋକେ ଦୀପାଳି ମାଳା କେ ଦିଏ ଦେବନନ୍ଦିନୀ ? -୫

ଶର୍ବରୀ ଦିବସ ଅବଶ ହେଲେ ଉଦାସ ମନ,
ପ୍ରସ୍ୱାପନ ସାଥେ କିଏ ସେ ଦିଏ ସୁଖସ୍ୱପନ ? -୬

ଘଟେ ଘାଟେ ପୁଣି ଘଟାନ୍ତେ କୁହ କିଏ ସେ ସଖା ?
କି ଦେଖିବ ଆଖି ସଖୀ ଗୋ, ସେ ତ ହୃଦୟ-ରଖା || -୭

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

{ଆସ୍ୟ= ମୁଖ; ଅଣୁକ= ଅଣୁମାତ୍ର କ୍ଷୁଦ୍ର; କଣୀକା = ବୀଜ, ମଞ୍ଜି; ଉଦକ କଣିକା= ଜଳ କଣା; ବିଟପ= ବୃକ୍ଷ; କଶ୍ୟପ= ମୃଗ; ଯୋଷିତା= ଘରଣୀ; ପ୍ରସ୍ୱାପନ= ଶୋଇ ଦେବା/ନିଦ୍ରା}

## ପ୍ରଭାତ ସଂଗୀତ -୧୨

କୌମୁଦୀ ମୁଦି ଚନ୍ଦ୍ରମା ଆନତବଦନା,
ଅସରା ସରାଗେ ଉଷା ସହାସ ଆସୀନା |-

ଅଲିଭା ଆଭାରେ ବିଭା ଭୂତଳେ ବରଷି
ବିଭାବସୁ ଆଭାସନ୍ତି ଭେଦି ତମୋ ରାଶି |-୨

ଶାଖାକୋଳେ ପକ୍ଷୀକୁଳେ କୂଜନ ସଂଗତି,
ଖଞ୍ଜରୀଟ ଝଟକରେ ଛଟକେ ଝଟତି |-୩

ହରିତ ପଟୀର ପରେ ତୁହିନ ହେମାଳ,
ଶୈଳ-ଚୂଳେ ସ୍ୱର୍ଣ୍ଣୋଜ୍ଜ୍ୱଳ ସରିତ ଉତ୍ତାଳ |-୪

ସର୍ବ ସଂଗୀତ ହେତୁକ ନୀରୂପ ନିର୍ଜର;
ସେ ପ୍ରସାଦ ସ୍ୱାଦ ସର୍ବେ କର ଅଙ୍ଗୀକାର |-୫

କୌମୁଦୀ = ଜ୍ୟୋତ୍ସ୍ନା; ମୁଦି = ନିର୍ବାପିତ କରି; ଅସରା = ଅସରନ୍ତି; ଆସୀନା = ଆଗତା, ଉପଗତା; ଅଲିଭା = ଲିଭୁ ନ ଥିବା; ଆଭା = ଆଲୋକ; ବିଭାବସୁ = ସୂର୍ଯ୍ୟ; ଆଭାସନ୍ତି = ଆଲୋକ ଦିଅନ୍ତି; ତମୋ = ଅନ୍ଧକାର; ସଂଗତି = ତାଳମେଳ; ଖଞ୍ଜରୀଟ = କଜଳପାତୀ ପକ୍ଷୀ; ହରିତ = ସବୁଜ; ପଟୀର = ପ୍ରାଙ୍ଗଣ, ପଡ଼ିଆ;

ତୁହିନ = ଶିଶିର; ଉତ୍ତାଳ = କ୍ଷୀପ୍ର; ହେତୁକ = କାରଣ; ନୀରୂପ ନିର୍ଜର = ରୂପହୀନ, ନିରାକାର ଜରାରହିତ [ଈଶ୍ୱର]; ପ୍ରସାଦ = କୃପା; ଅଙ୍ଗୀକାର = ସ୍ୱୀକାର, ଗ୍ରହଣ

## ରାତ୍ରୀ ଆବାହନ -୧ ୩

ବିରାଜ ରଜନୀ ଜନୀ ସଞ୍ଜ ଯାଏ ବିତି
ଶ୍ରାନ୍ତ ଅବଶ ଶରୀର ସଙ୍ଗେ ମନ କ୍ଳାନ୍ତି | -୧-

ଅସିତ ଅଶ୍ମନ କୋଳେ ଅଶନି ଅସ୍ଥିର;
ଭୀଷଣ ବରଷା ତ୍ରାସେ ପଶୁ ପକ୍ଷୀ ନର | -୨-

ନୀରଚର ସରୀସୃପ ଶରଣ ଆତୁର
ବାସ ଏଷଣା କଷଣେ ସଚଳ ତତ୍ପର | -୩-

ଜଗତ-ଗତି-ଗୀତିକା ବ୍ୟଥା-ଗନ୍ତାଘର
କ୍ଳେଶ ଗ୍ରାସେ ଶିଶୁ ବାଳ ବୃଦ୍ଧ ଜରଜର | -୪-

ବାସର ସ୍ୱେଦନ ଶେଷେ ଦିଅ ପ୍ରସ୍ୱାପନ
ବିଷୟ ବିଷ ବିନାଶି ଆଶୁ ବିସ୍ମରଣ | -୫-

ଜନୀ= ମାତା; ଅସିତ=କଳା; ଅଶ୍ମନ୍=ମେଘ; ଅଶନି= ବିଜୁଳି; ତ୍ରାସ= ଭୟ; ଏଷଣା= ଅନ୍ୱେଷଣ; ସଚଳ= ଗତିଶୀଳ; ଜଗତ-ଗତି-ଗୀତିକା= ସଂସାରର ଗତିର ଶାସ୍ତ୍ର; ଗ୍ରାସ= ମୁଖ; ବାସର= ଦିବସ; ସ୍ୱେଦନ= ସ୍ୱେଦ/ଝାଳ ନିର୍ଗମନ; ପ୍ରସ୍ୱାପନ= ନିଦ୍ରା; ବିଷୟ= ଭୋଗ୍ୟବସ୍ତୁ(ର ଆକର୍ଷଣ); ଆଶୁ= ତତ୍କାଳ

## ଆସିବ ଆସିବ -୧୪

ଆସିବ ଆସିବ ବୋଲି ଗୋ
ତୁମେ, ଚାହିଁଛି ବାଟ |
କେତେ କାଳ ଲୁଚି ରହିବ
କୁହ କରି କପଟ || -୧

ବସି ବସି ଏକା ଏକା ମୋ
ଦିନ ଯାଉଛି ବିତି |
ଜଣା ତ ପଡୁ ନି ସକାଳ
ସଞ୍ଜ ରାତି ପାହାନ୍ତି || -୨

ଥରେ ଆସି କୁହ ପଦଟେ
କେବେ ଜୀବନେ କଥା |
ହସି ଦିଅ ଆସି ଥରଟେ
ପୋତି ତଳକୁ ମଥା || -୩

ସରି ତ ଯାଇଛି ସପନ
ମରି ଯାଉଛି ଆଶା |
ସହି ପାରେ ନା କି ପାରେ ନା
କହି, କି ଲୋକହସା || -୪

ଆଉ କେ ଏ ପରି ରହିବ
ଚାହିଁ କହିବ ତୁମେ |
ଏ ଜନମ ଛାଡ଼ି ପାଇବ
ନାହିଁ ସାତ ଜନମେ || -୫

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଛାଡ଼ି ଯାଅ ନାହିଁ ଆଶା ଗୋ
     ଦୀନ-ଜୀବନ-ଧନ |
ତୁମ ବିନା ବିଷ ଜୀବନ
     ଆସେ ନାହିଁ ମରଣ || -୬

ଚିରା ଲୁଗାଟିକି ଗଲ କି
     ଭୁଲି, ରଖିଛ ମନେ ?
ପୋଛିଥିଲି ତୁମ ଆଖିରୁ
     ଲୁହ ସେଥିରେ ଦିନେ || -୭

ଧୋଇ ନାହିଁ ସେହି କନା ମୁଁ
     ରଖିଅଛି ସାଇତି |
ଆସିଲେ ଦେଖିବ ସେ ମନ-
     ଲୋଭା ଅଭୁଲା ସ୍ମୃତି || -୮

ମୋ ଲାଗି ନୁହଁ ସେ ଲୁହ ଗୋ
     ସେ ତ ମୁକୁତା ବିନ୍ଦୁ |
ଅନ୍ଧାର ଉଆଁସ ରାତିରେ
     ମୋର ପୂର୍ଣ୍ଣିମା ଇନ୍ଦୁ || -୯

ଯେବେ ଚାଲିଯିବ ଏ ବାଟେ
     ସବୁ ଲାଗିବ ନୂଆ |
ପୁରୁଣା ପୀରତି କାହାଣୀ
     ମନେ ପଡ଼ିବ କିଆଁ || -୧୦

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ନୂଆ ବାଟ ଘାଟ ବଜାର
ବଡ଼ ଉଜ୍ଜ୍ୱଳ ବତୀ |
ଦେଖି ଆଖି ଲାଖି ରହିବ
କୋଠା ବାଡ଼ି ବସତି || -୧୧

ନୂଆ ସେ ସଡ଼କ ପାଖେ ମୋ
ଭଙ୍ଗା ପୁରୁଣା ଘର |
ଚାଳ ମେଲା ଚାନ୍ଦ ଆଲୁଅ
ତୋଫା ଘର ଭିତର || -୧୨

ଭସା ବାଦଲର ଭିତରେ
ଶଶୀ, ତା ସାଥେ ତାରା |
ଲୁଚକାଳି ଖେଳ ଦେଖିବ
ତୁମେ ଆସିଲେ ପରା || -୧୩

ଶୁଣୁ ତ ନ ଥିବ ତୁମେ, ମୁଁ
ଏକା ଯାଉଛି କହି |
ହସି କଟୁ ତୁମ କାଳକ
ମୁଁ ତ ବସିଛି ଚାହିଁ ||-୧୪

ଶୀତ ଗାଡ଼ି ଚଢ଼ି ମାଡ଼ି ଯା
ଭିଡ଼େ ଗଡ଼ାଇ ଚକ |
ଛାତି ତଳ ତାତି ଥାଉ ମୋ
ସାଥୀ ଜୀବନ ଯାକ ||-୧୫-

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

# ମିଠା ମିଠା ପ୍ରେମକଥା -୧୫

କଥା ମାନି ଉଠ ମାନିନୀ
ଗଲା ଯାମିନୀ ସରି;
ଡାକରା ହେଲାଣି ମେଲାଣି
ଘେନି ଯିବି ସେ ପାରି | -୧

କାନେ କାନେ କହି ଯିବି ଗୋ
ମୋର ମରମ ବ୍ୟଥା;
କହିବନି କାଲି ଗଲି ମୁଁ
ଚାଲି ନ ବୋଲି କଥା | -୨

ନାହିଁ ତ ଗୁପତ ବିତ୍ତ ଠି-
କଣା ଦେବି ବୁଝାଇ;
ଛୋଟ ଗପ ଛୋଟ ଖାତାରେ
ଦେଇ ଅଛି ସଜାଇ | -୩

ମିଠା ମିଠା ପ୍ରେମ କଥାର
ଖୋଲି ଦେବି ଗୋ ପେଡ଼ି;
ପ୍ରେମିକ-ଚଢ଼େଇ ଉଡ଼ିବେ
ଆଶା-ଆକାଶେ ପଢ଼ି | -୪

ଛୋଟ ଛୋଟ ଶିଶୁ ଆସିବେ
ଯେବେ ଏ ଘର ବୁଲି,
ଛୋଟିଆ ଖେଳନା ରଖିଛି,
ଦେବ ଡବାଟା ଖୋଲି | -୫

ହାତୀ ଘୋଡ଼ା ବାଘ ବିଲେଇ
ମୂଷା ଧାଡ଼ିକି ଧାଡ଼ି;
ରେଖାଯାନ ଉଡ଼ାଜାହାଜ
କୁନି ମଟର ଗାଡ଼ି ।   -୬

କପୋତ କପୋତୀ ବଗୁଲୀ
ବଗ ବେଙ୍ଗ ବେଙ୍ଗୁଲୀ;
ଶୁଆ ସାରୀ ବଣି କଜଳ-
ପାତୀ କାଉ କୋଇଲି ।   -୭

କରେଇ ଡେକିଚି ମାଠିଆ
ଗିନା ଡଙ୍କି ଖୋସଣୀ;
ପାଛିଆ ପନିକି କତୁରୀ
ନାରୀକେଳ-କୋରଣୀ ।   -୮

ଦରାଣ୍ଡିବେ ମୋତେ ଏରୁଣ୍ଡି-
ବନ୍ଧ ପାଖରେ ଯେବେ;
କହିବ -- ବରଷେ ପରେ ସେ
ଘରେ ଫେରି ଆସିବେ ।   -୯

ମନ ଦେଇ ପାଠ ପଢ଼ ରେ
କର ଅଳପ ରୋଳ,
ଭଲ ଫଳ କଲେ ଖୁସିରେ
ଆସି ଯିବେ ସହଳ ।   -୧୦

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

କହିବନି -- ଫେରି ଖେଳିବି
ନାହିଁ ଆଉ ମୁଁ ଖେଳ;
କହିଲେ ଡରିବେ କରିବେ
ନାହିଁ ଏଠି ଚହଳ । -୧୧

କହିବନି ତାଙ୍କୁ ଦୁନିଆଁ
ଦୁଇ ଦିନିଆଁ ମେଳା;
କଣ୍ଢେଇ ଧରାଇ କୁଣ୍ଡାଇ
ଧରି କରିବ ଗେଲା । -୧୨

ଛବି ବହି କିଣି ରଖିଛି
ଟିକି ନାତୁଣୀ ଲାଗି;
ଜୋତା ଛତା ମୋଜା ରଖିଛି
ଆସି ହେବନି ରାଗି । -୧୩

ରଙ୍ଗ ପେନ୍‌ସିଲ୍ ରବର
ତୂଳୀ ଭଳି ଭଳିକି;
ଆଲମାରୀ ସାରା ଭରିଛି,
ଛବି ଦେବ ସେ ଆଙ୍କି । -୧୪

ଟିକି ଗୀତ ବହି ରଖିଛି
ସେଠୁ ଟିକି ଚଢ଼େଇ,
ଟିକି ତାରା, ଟିକି ଫୁଲର
ଗୀତ ଦେବ ସେ ଗାଇ । -୧୫

ଟିପି ଟିପି ଝରି ପଡ଼ିବ
ଯେବେ ବରଷା ପାଣି;
ଫେରି ଯାଅ ପରେ ଆସିବ –
ଗାଇ ଦେବ ନାତୁଣୀ ।   -୧୬

ଖରା-ଛାଇ ସଙ୍ଗେ ବରଷା
ଯେବେ ଆସିବ ମାଡ଼ି;
ବିଲୁଆ ନନାର ବିବାହ
ଗୀତ ପଢ଼ିବ କାଢ଼ି ।   -୧୭

ଟିକି ଟିକି ଆଖି ଆକାଶେ
ଦେଖି ଛୋଟିଆ ତାରା
ଖୋଲି ଦେବ ଛବି ବହିରୁ
ତା'ର ଗୀତ ପସରା ।   -୧୮

ତା ତଳ ନାଡି କି ପଢ଼ିବ
ସେ ତ ବଡ଼ ଚଗଲା
ତା ଲାଗି ଆଣିଛି ଫଉଜି
ବେଶ ବନ୍ଧୁକ ଗୋଳା ।   -୧୯

ଝରାବତୀ କୁମ୍ପି ଆକାଶ-
ଛଡା ବାଣ  ଫୋଟକା
ଦୀପାଳିରେ ତାଳି ମାରିବ
ଖେଳି ଚଗଲା ଟୋକା ।   -୨୦

ରଖିଛି ଶୀଶ୍ଚାର ମୃଦଙ୍ଗ

ଭେରୀ ନିଷଦ କେତେ,

ରାଜ-ସାଜେ ନାତି ନାଚିବ

ତାଳି ଦେବେ ତା ମିତେ । -୨ ୧

ନାତି ନାତୁଣୀଙ୍କୁ ଦେଖେଇ

ଦେବ ଆକାଶ ତାରା,

କହିବ ସେଠୁ ମୁଁ ଦେଖୁଛି

ଆମ ଘରଟା ସାରା । -୨ ୨

ଚିକି ଚିକି ଆଖି ଆକାଶେ

ଦେଖି ଛୋଟିଆ ତାରା

ଖୋଲି ଦେବ ଛବି ବହିରୁ

ତା'ର ଗୀତ ପସରା । -୨ ୩

ତା ତଳ ନାତି କି ପଢ଼ିବ

ସେ ତ ବଡ଼ ଚଗଲା

ତା ଲାଗି ଆଣିଛି ଫଉଜି

ବେଶ ବନ୍ଧୁକ ଗୋଳା । -୨ ୪

ଝରାବତୀ କୁମ୍ପି ଆକାଶ-

ଛତା ବାଣ ଫୋଟକା

ଦୀପାଳିରେ ତାଳି ମାରିବ

ଖେଳି ଚଗଲା ଟୋକା । -୨ ୫

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ରଖିଛି ଶୀଶ୍ବାର ମୃଦଙ୍ଗ

ଭେରୀ ନିଷଦ କେତେ,

ରାଜ-ସାଜେ ନାଚି ନାଚିବ

ତାଳି ଦେବେ ତା ମିତେ |-୨୬

ନାଚି ନାତୁଣୀଙ୍କୁ ଦେଖେଇ

ଦେବ ଆକାଶ ତାରା,

କହିବ ସେଠୁ ମୁଁ ଦେଖୁଛି

ଆମ ଘରଟା ସାରା | -୨୭

## ନାରୀ ଶୁଣ ହେ ଶୁଣ -୧୬

ନୋହୁ ରେ ଅପତ୍ୟା, ଶାର୍ଦୁଳତନୟା; କିଏ ବା କହିବ ତୋତେ ନାଗୁଣୀ ?
ଛାଡ଼ି ତୋ ବାହାର ଦେଖ ଅଭ୍ୟନ୍ତର, ତୁ ଭଗ୍ନୀ ଜନନୀ କନ୍ୟା କାମିନୀ ||

ଯେ ତୋତେ ନିନ୍ଦିଲା – ନିଜେ ସେ ନାରୀ;

ମତି -- ଦେଇଛି ହାରି;

ଆନ ପରେ ଏକ ଲୋଡ଼ିଲେ ନିରେକ

ଏ ଭୂମେ ନରକ

ହେବ ତିଆରି ||

ଆରେ -- ବୁଝ ତୁ ନାରୀ ||

କେବେ -- ବୁଝିବ ପୁଣ ?

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ନିନ୍ଦା ଅପବାଦ ବାଦ ବିସମ୍ବାଦ ନିଜକୁ ବିପଦ ଶୁଣ ହେ ଶୁଣ;
ବାରେ -- ମୋ କଥା ମାନ;
ସାଥୀ ପ୍ରୀତି କରି ହାତେ ହାତ ଧରି ଆପଣ ବିଚାରି ଚାଳ ଚରଣ;
କେବେ -- ହେଜିବ ପୁଣ ??

## ପରାଣ ପ୍ରକଟି ଏମିତି ଛୁଟେ -୧୭

ଛାତିରେ ପଥର ପ୍ରୀତିରେ ପଥର ଭାତିରେ ରାତିରେ ପଥର ସଭା;
ତଳପ ପଥର ତୂଳିକା ପଥର ଲେଖନୀ ଅଙ୍କନୀ କାମିନୀ ଗଭା ||-୧

ଘଟେ ଘାଟେ ମାଟି ପିଠେ ତୁଠେ ମାଟି, ମାଟି ସାଥେ ମାଟି ପିଠର ଲୋଟେ;
ପୟସେ ହୁତାସେ ବତାସେ ଆକାଶେ ପରାଣ ପ୍ରକଟି ପଲକେ ଛୁଟେ ||

## ସେଇଠି କେମିତି ହେବ ଅଧା ଅଧା ? -୧୮

ଲିଭି ଲିଭି, ଲିଭି ଯାଇନି ଏବେ ବି
କଳ୍ପନା ଦୀପ ଶିଖା
ଅଳ୍ପ ହେଲେ ବି ଲେଖୁଛି ଯା' ଅଛି
ସ୍ମୃତିରେ ଜ୍ୟୋତିର ରେଖା || -୧-

ପିଲା ବେଳ କଥା ଲାଗେ ମିଠା ମିଠା
ଅଧା ଅଧା ମନେ ହେଲେ |
ଦିଗ୍‌ବଳୟ ବି କେଡ଼େ ମଧୁମୟ
ଛାଇ ଆଲୁଅର କୋଳେ || -୨-

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ସେଇଥି ପାଇଁ ତ ସୁମଧୁର ଗୀତ
ପ୍ରଭାତେ, ସଞ୍ଜ ବେଳେ |
ଦୂର ପରିଜନ ଖବର ମଧୁର
ଅଧା ଲିଭା ଚିଠି ଗାରେ || -୩-

ଲିଖନ ପଠନ ମଧୁର ଗଭୀର
ଅଧା ଅଧା ରାତି କାଳେ |
ବଂଶୀର ସ୍ୱନ ଜିଣି ନିଏ ମନ
ଅଧା ଅଧା ଖରା ବେଳେ || -୪-

ନବ ବଧୂ ମୁଖ କେଡ଼େ ମଧୁ ଦେଖ
ଅଧା ଓଢଣା ଭିତରେ |
ପ୍ରିୟା ପ୍ରତିଶ୍ରୁତି ଲାଗେ ମଧୁରାତି
ଭୀତିଭରା ପୀରତିରେ || -୫-

ସେ ପାରି ଡାକରା ଆସେ ରହି ରହି
କାନେ ପଶେ ଅଧା ଅଧା |
ଶୁଣି ଅଧା ଅଧା, ଅଧା ମୁଁ ଶୁଣେ ନା –
ସାରିନି ମୁଁ ପାଟ ପିନ୍ଧା || -୬-

କହେ ଶାସ୍ତ୍ରଜ୍ଞାନ -- ଫେରି ଯା ବହନ,
କାଢ଼ି ନିଅ ଏଠୁ ମନ |
ଛାଡ଼ି ଛାଡ଼ି, ଛାଡ଼ି ଦେଇ ପୂରା ପୂରି
ପାରୁ ନାହିଁ ବନ୍ଧନ || -୭-

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଯିବାକୁ ଆତୁର,  ବେଳ ତ ଉଛୁର,
    ଯିବି ଆଜି ଅବା କାଲି |
ଭୁଲିବନି କେହି,  ମୁଁ ବି ଭୁଲୁ ନାହିଁ,
    ଗଲେ ବି ଆସିବି ବୁଲି || -୮-

ତୁମ ସାଥେ ଏଠି  ନିତି ବସି ଉଠି
    ମନ ସେଠି ପର ପାରେ |
ସେଇଠି ଯାଇକି  ସେଇୟା ହେବ କି?
    ମନ ଥିବ ଦୁଇ ଠାରେ ? -୯-

## ଦିଗହରା ପଥଚାରୀ -୧୯

ଆଜି ଯେ ନିଜର  କାଲି ସିଏ ଦୂର
    ପର ପୁଣି ଆପଣାର;
ସମୟ ନଈରେ  ଦୁଇ ଘଡ଼ି ପରେ
    ଝଡ଼ି ପଡ଼େ ଘରବାର | -୧

କିଆଁ ତେବେ ଧନ  ଯୋଡ଼ିବୁ ରେ ମନ
    ଘନ ବନ ଦୁନିଆଁରେ ?
ଯଉବନ ଧନ-  ଜନ ଦୁଇ ଦିନ
    ପରେ ଯିବ ତା' ରାହାରେ| -୨-

ରେ ମନ ଅବୁଝା          କି ରଜା ପରଜା
ଦି' ଦିନିଆଁ ସାଜ ସଜ୍ଜା
ସାରି ଯିବେ ଫେରି  କରମ ଆଦରି
ଶ୍ମଶାନେ ବଜାଇ ବାଜା |          -୩-

ଜୀବନେ ଯେ ଦିନେ ବୁଝେ ନା ଯାତନା
କଲିଜା ଜଳିବା ବେଳେ
ମଶାଣି ଭୂଇଁରେ          ଧୂଆଁ ଧାସ ଧାରେ
ଆହା ହା କରିବ ଛଳେ |          -୪-

ଦିନେ ଅଜାଣତେ          ତୋ' ଚାଲିବା ପଥେ
ଆସି ନାହିଁ ଯିଏ ଥରେ,
ଧରି ଫୁଲ ମାଳ          କରିବ ଚହଳ
ଶିବାଳୟେ ଶବ ଧାରେ |          -୫-

ସମାଧିରେ ତୋର          ଦେଇ ଫୁଲ ହାର
ଫେରିବେ ଯେ ଯାହା ବାଟ,
ଏକା ତୁ ମଉନେ          ଥିବୁ ନିକାଞ୍ଚନେ
କାହିଁକି ଏବେ ଉଚ୍ଚାଟ ?          -୬-

ବରଷକେ ଥରେ          ନିହାତି ବେଶିରେ
ଜାଳିବେ ଅଗରବତୀ,
ଏକା ଆଗ ପରି          ମାଟିକି ଅବୋରି
ଥିବୁ ନିତି ଦିନ ରାତି |          -୭-

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଜୀବନ ଜାଳାରେ କେହି ନିଜ ଘରେ
ରହି ତ ପାରୁନି ଜନ,
ତୋ ଲାଗି କିଆଁ ସେ ବରଷା ବତାସେ
ଆସୁଥିବ ଶମଶାନ ? -୮-

ଚାଲି ଯା ଭୁଲି ଯା, ଏକା ତୁ ଜଳି ଯା
ଦିଗହରା ପଥଚାରୀ,
ତୋର ବୁକୁଚିରା ବଣିଜ ପସରା:
ଲୋତକ ଅସରା ଧରି | -୯-

## ଦେଖିବି ମୁଁ ବ୍ରହ୍ମାଣ୍ଡସୁନ୍ଦରୀ -୨୦

ଦେଖିନି ବଦନ ଗୋରୀ ଦେଖିବି ପ୍ରଥମ କରି
ଶୁଣିଛି ତ ଭୁରି ଭୁରି ତୁ ଟା ବ୍ରହ୍ମାଣ୍ଡସୁନ୍ଦରୀ || -୧

ରସନା ରଖିଲେ ମାରି କାନ୍ଦିବୁ ତୁ ବୁକୁ ଚିରି,
କହିବି ସାହସ କରି ଯାଉଛି ମୁଁ ଡରି ଡରି || -୨

ନୟନୁଁ ପର୍ଜନ୍ୟ ପରି ଝର୍ଝର ଝରିବ ବାରି;
ତୋ ଲାଗି ଅବଳାନାରୀ ହେବି କି ମୁଁ ମିଥ୍ୟାଚାରୀ ? -୩

ଶୁଣି ସହିବୁ ବିଚାରି ଯାଇଛି ସେ ପର କରି;
ତୁ ଥିଲୁ ତା ସହଚରୀ, ସେ ତୋ ଢାଲ ତରବରୀ || -୪

କରିଥିଲୁ ସାତଫେରି ଶଙ୍ଖା ଚୁଡ଼ି ସଜ ଧରି;
ଫୁଟୁଥିଲା ଫୁଲଝରି ବାଜୁଥିଲା ଭେରୀ ତୁରୀ || -୫

ଚାହିଁଲେ ପଛକୁ ଫେରି ଲାଗୁଥିବ କାଲି ପରି,
ଆଣିଲା ଚଢ଼ି ସବାରୀ କୋକେଇରେ ଯିବ ଫେରି || -୬

ଅଦିନ ବରଷା ବାରି ସାଥେ ଏ ଯେ ଘଡ଼ ଘଡ଼ି,
ଶୁଣିବୁ କି ଦମ୍ଭ ଧରି ଭୂତଳେ ପଡ଼ିବୁ ଝଡ଼ି ? -୭

ଦେଖିବି ମଉନ ମାରି; ସମ୍ଭାଳିଲେ ହାତ ଧରି
କହିବେ ତୁ ବାରନାରୀ, ମୋତେ ତୋର ବ୍ୟଭିଚାରୀ || -୮

ଥିବି ତୋ ପାଶେ ସୁନ୍ଦରୀ ଛାତିକୁ ପଥର କରି,
ଘେରି ଘେରି ପୁର ନାରୀ ଆଖି ହେବେ ଠରା ଠରି || -୯

ଆକାଶେ ଆସୁଛି ମାଡ଼ି ଘନ ମେଘ ଘଡ଼ ଘଡ଼ି
ଖୋଲିବି କାହାଣୀ ପେଡ଼ି ବେଳ ନ ଯାଉଣୁ ବୁଡ଼ି | -୧୦

ଦେଖିବି ପ୍ରଥମ କରି ବନ୍ଧୁପତ୍ନୀ ମନ ଭରି,
କାନ୍ଦିବୁ ତୁ ଝୁରି ଝୁରି, ମୁଁ ଥିବି ପଥର ପରି || -୧୧

## କରିବ ରଣ -୨୧

କବିତା ବୀତ ନୁହେଁ, ଭବିଷ୍ୟବାଣୀ:
କହେ ସଜ୍ଜନେ ଜିନ ଜନ ବଖାଣି ||

ସନ୍ଥ ସର୍ବଗ ଶାପ କରି ବରଣ
ପାଖଣ୍ଡୀ ପାକିସ୍ଥାନ କରିବ ରଣ ||

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ମତି ବିରୂପ ହେଲା ବିନାଶ କାଳେ
ନିଶିକେ ନାଶ ଯିବ ବିନା ସକାଳେ       ||

## କଥା ଦେଲି                        -୨୨

ତୋର --    କମ୍ର ମଧୁର ବାଣୀ ଝଙ୍କାର
ପୁଣି --     ତପ୍ତ ରୁଧିର ଅକ୍ଷର ଝର
ନୃତ୍ୟେ କୋଟିଶ    ଯଉବନ ବନେ     ଶିହରେ ଉନ୍ମାଦନା,
ବଜ୍ର ଦମ୍ଭେ    ଗଗନ ଚୁମ୍ବେ       ପତିତପାବନ ବାନା;
ଗିରି --     ଗୁହରେ ସଂଦୀପନା
ସାଥେ --    ଋଷିର ସଂବେଦନା ||-୧

ମୁଁ ଯେ --    ଉତ୍କଳ କୋଳେ          ଜନ୍ମି ପଡ଼ିଛି,
ଅନୁ --     ରକ୍ତି ଏ; ନାହିଁ           ସମ୍ପାତ କିଛି;
ଭଞ୍ଜ ଭୂଇଁରେ ଭକ୍ତକବିର        ସକ୍ତ ସାଧକ ମୁହିଁ;
ମାତୃଭୂମିରେ       ମାତୃଭାଷାର       ଗଉରବ ଗାଇ ଗାଇ
ବାକି --     ଜୀବନଟା ଦେବି କାଟି
କଥା --     ଦେଲି ମା ଜନ୍ମମାଟି || -୨

## ବିଗତ ଯୌବନେ କେମିତି ଲେଖିବି      -୨୩

ପ୍ରେମକବିତା ବି ଲେଖିଥିଲି ପିଲାବେଳେ,
ଏବେ --    କେବେ କେବେ ମନେ ପଡ଼େ;
ମୁହଁ ଅନ୍ଧାରେ,
କେବେ ବା ଶୀତ ସକାଳେ

ମୋର ପୁରୁଣା ଖାତାଟି
ଏକା ଏକା କାଢ଼ି ପଢ଼େ ||

କର୍ମକଷଣ ଚାପରେ ଦିବସରାତି
ଚାରି ଦଶନ୍ଧି କଲି ଅଜ୍ଞାତବାସ;
ଅବସରେ ଏବେ
ବିଗତ ମୋ ଯଉବନେ,
ପୁଣି ଲେଖିବି କବିତା,
କରିଛି ଦୁଃସାହସ ||

ବନ୍ଦେବି ମା ! ତୁମରି ଚରଣ ଧୂଳି
କାଣିଚାଏ ଏଇ
ବିଦାୟ ବେଳେ ଯେ ଦେଲ;
କୋଟି କୋଟି ଘେନ
ପ୍ରଣାମ ଏ ଅଧମର;
ହେଲେ –
ଯଉବନ ଗତେ,
ହତବସନ୍ତେ
ପାରିବି କି ଲେଖି
ଗୀତ ମନଲାଖି,
ଏବେ ଯା ଲେଖୁଛି
ଦିନେ କାଳେ କିଛି
ମୁଁ ଜାଣେ ସେଥିରେ କଣ୍ଟା ବହୁତ,
କାଁ ଭାଁ ଥିଲେ
ଥିବ ଗୋଟେ ଅଧେ ଫୁଲ ||

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଉତ୍କଳବାସୀ
ମୋ ପ୍ରିୟ ପଡ଼ୋଶୀ !
ତୁମ ମନଖୁସି
କରିବାର ଅପଚେଷ୍ଟା
କରୁଅଛି ଏବେ;
ନ ଧରିବ କେବେ
ହେଲେ ରୁଚିହୀନ ମୋ କବିତାମାନ,
ମୁଁ ଏକ ସାମାନ୍ୟ ଜନ ଗୁଣହୀନ,
କହିରଖେ ଶୁଣ,
ମୁଁ ନୁହେଁ ସାହିତ୍ୟସ୍ରଷ୍ଟା ||

## ଧ୍ୱସ୍ତ ପତର ଭାଷା -୨୪

ଖଣ୍ଡିତ ଦୀପ
ଦଗ୍ଧ ସଳିତା
ଅନଳର ଶିଖା
ଜଳୁଛି ସେଥିରେ
ତିଳେ ହେଲେ ସେ ତ
କାହିଁ ଏ ଯାବତ
ପ୍ରଶମିତ ହେଇ ନାହିଁ |

ପ୍ରତିଚୀ ଗଗନେ
ଦିଗ୍ବଳୟର ତଳେ --
ଭାସ୍ୱତ ସାତ-ଅଶ୍ୱ-ଚାଳିତ
ନିଖୋଜ ହେଇ ବି
ଅସ୍ତାଚଳର ଅନ୍ତରଙ୍ଗେ
ଅଳ୍ପ ଆଲୁଅ  ଏବେ ବି ଢାଳିଛି ଦେଇ |

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଲତା-ଗୁଳ୍ମରୁ ଶୁଷ୍କ ସୁମନ
କଳ୍ପନା ଭରା-
ଜୀବନ ଅସ୍ତ କାଳେ
ନେବ ଆଶ୍ରୟ
ହେଲାଣି ସମୟ
ସଞ୍ଚୟ କରି ବଳ
ଆଖି ମେଲି ଜଳ ଜଳ --
ଧରି ସେ ସାହସ
ଦେଉଛି ସୁବାସ
ଝଡ ବତାସରେ
ତଳେ ଝଡି ପଡି
ଏବେ ବି ତ ମରି ନାହିଁ ।

ସାଗର କନ୍ୟା --
ଥିଲା ସେ ଧନ୍ୟା
ଛୁଟାଇ ବନ୍ୟା
କ୍ରୀଡା ନିମଗ୍ନା
ଦୁଇ ଧାରେ ଧରି
ରୂପ ଅନନ୍ୟା
ବଶ୍ୟ କାମନା ଜାଗ୍ରତ କରି
ବିଳାସ-କୁଶଳୀ
ଛଟକ-ନିପୁଣା
ଧରଣୀ-ମଗ୍ନା
ଫଲ୍ଗୁ ଯାଇଛି ବହି;
ଦିଶୁ ନାହିଁ ସିଏ
ଲୁଚି ଲୁଚି ଦିଏ
ଜଳର କଣିକା
ମାଟିର ଗର୍ଭେ ଥାଇ ।

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ମୋତେ --
ହେଲାଣି ବୟସ,
ଆଉ କେତେ ମାସ,
କି ଅବା ବରଷ ନିରତ ନିରସ
ମୋ ପାଶେ ଯାଇଛି ରହି;
ଉତ୍କଳ-କଳା ଉଜ୍ଜ୍ୱଳ କରି
ତୁମରି ଗଳାରେ ଅରପିବି ମାଳା,
ଦେଇ ଯିବି ଭାଷା --
ନାହିଁ ତିଳେ ଆଶା
ମୋର ରହି ଯାଇଥିବା ଛିଣ୍ଡା ଖାତାର
ଅଳ୍ପ କେତେଟା ପୁରୁଣା କବିତା
ତା'ର ଜରା-ଜର୍ଜର
ଧୂସର ବର୍ଣ୍ଣ, ମରଣାପନ୍ନ --
ସେଇ ଧ୍ୱସ୍ତ ପତରୁ ଦେଇ ।

## ଏ ମନ ଏମିତି -୨୫

ମନ କଥା ମନେ ନ ରଖି କହିଲେ
ହସିବେ ଜଗତ ଜନେ ।
କାହାକୁ ନ କହି ନିରବ ରହିଲେ
ମନ କି ସେ କଥା ମାନେ ?

ଏ ମନ ଏମିତି କେଉଁଥିରେ ଶାନ୍ତି
କେହି ନ ପାରନ୍ତି ଜାଣି
ଏ ଡାଳୁ ସେ ଡାଳ ଧରି ବିତେ କାଳ
ସବୁ ଜାଣି ସବୁ ଶୁଣି ।

# ଯାଉ ଦି'ଘଡ଼ି -୨୬

ସୂର୍ଯ୍ୟ ତୁମେ
ଚାଲିଛ ଚଢ଼ି ଆକାଶ-ସିଡ଼ି,
କରିଛ ଚାଲି ଏଡ଼ିକି ନାଲି
ଅଗ୍ନିର ବରଷା;
ବସିଛି ଏଠି, ଯାଉ ଦି'ଘଡ଼ି
ଆସିଲେ ଥରେ ସନ୍ଧ୍ୟା ମାଡ଼ି
ଦେଖିବି ତୁମ
ପୁନର୍ମୂଷିକ ଦଶା ||     -୧-

ଅମ୍ବୁଧାରୀ
ଆକାଶେ ଉଡ଼ି
ଛାଡ଼ି ତୁ ରଡ଼ି
ବିଜୁଳି ମାରି
ଭିଡ଼ି କଚାଡ଼ି
ଦେଖାନା ଏତେ ଠାଣି |

ଯାଉ ଦି ମାସ
ହେଇ ହତାଶ
ବଣରୁ ବିଲ
ଝରଣା କୂଳ
ନଈରୁ ନାଳ
ସାଗର ଜଳ
ବୁଲିବୁ ଯାଇ
ପାଗଳ ହେଇ

ପି'ଇବା ପାଇଁ
ଟୋପେ ଟୋପେ ପାଣି ||        -୨-

ଏଇ ଘଡ଼ିଟା ଦେଖାଉ ଥା
ଉଚ୍ଛୁଳା ଯୌବନ,
ଖୋଲା ଥାଉ ଅସଂଖ୍ୟ ପଲକ;
ଗୋଟିଏ ଦିନ ଅଗ୍ନି ସମ ପ୍ରଜ୍ଜ୍ୱଳନ
ତା'ପର କ୍ଷଣ
ଭଷ୍ମ ସ୍ତୋମ
ଦେଖୁଛି ଅନେକ ||        -୩-

## ଚିଠି        -୨୭

ଚିଠି:
ସେ ତ –
ସ୍ମୃତିରେ ଅଲିଭା ଗାର !

ସେ ତ –
ସ୍ୱପ୍ନ-ଗନ୍ତାଘର;
ନିଜ --
ଛାତିର ରକ୍ତ ଧାର;
ବର୍ଷା ରାତିରେ
ଝର୍ଝର ନୀରେ
ପାରାବାର ତୀରେ
ହତ-ଅଭିସାରେ

ସିଏ –
ବାଲିରେ ହସ୍ତାକ୍ଷର,
ଜୀବନ ବେଣୁରେ
ଶ୍ମଶାନ ରେଣୁରେ
ପ୍ରୀତି-ପ୍ରତୀତିର ଦମିତ ଶମିତ
ବିଦ୍ରୋହ ବାର ବାର,
ଜନ୍ମେ ଜନ୍ମେ ସଦା ସହଚର
ତୃଷ୍ଣା--       ତୂଣୀରେ
କ୍ଷୀପ୍ର ତୀକ୍ଷ୍ଣ ତୀର;

ଗୋଟି ଗୋଟି ଚିଠି
ପାଟି ଗଲେ ଫିଟି
ଆସିବ ଲେଉଟି
କୋଟିଏ ଆସ୍ୟେ
ଲାସ୍ୟ ନୂପୁର-ସ୍ୱର,
ଶତ ବନ୍ଧନ ଖଣ୍ଡନ କରି
ଗୁଞ୍ଜରି ଯିବ ଜୀବନ କାସାରେ
ନିନାଦ ବିଷାଦ ସ୍ୱର,
ତୋଳି ଶତ ଶତ
ମୂର୍ଚ୍ଛିତ ପ୍ରାଣେ
ଆଶାର ଆସର,
ଉଷ୍ମ ସରିତ ଝର;
ଏଣୁ –
ପ୍ରୀତିରେ ପତ୍ରାଚାର ||

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

## ବିରହିଣୀ -୨୮

ମଉଳା ମନରେ
ଝାଉଁଳା ଫୁଲଟା
ସାଉଁଳିଲା ବେଳେ
  ସେ ଫୁଲ ବୋଲେ--
ହଜିଲା ଦିନଟା
ଖୋଜିଲେ ମିଳେ କି ?
ପୋଡ଼ିଲା ସଳିତା
  ଆଉ କି ଜଳେ ?-୧
ଉଆଁସ ନିଶୀଥ
ସପନ ଉଆସ
ବତାସ ନ ଥାଇ
  ପଡ଼ିବ ଧସି;
ଆକୁଳେ ସକାଳେ
ସରସୀର କୂଳେ
ପ୍ରେୟସୀ ବେଶରେ
  କି ଲାଭ ବସି ?-୨

ଅଳସ ବାସର
ବିରସ ଶର୍ବରୀ
ବିବସ ବସନେ
  ସାଇତା ଲୁହ
ଆଖିରୁ ନିଗାଡ଼ି
ହେବ କି ସଜାଡ଼ି
ବିରହ ଭାବନା

ଅଡୁଆ ଖୃଅ ?-
ଶରତ ଶିଶିରେ
ଗ୍ରୀଷମ ଘର୍ମରେ
ବରଷା ବାରିରେ
ବରଷ ସାରା
ଆଖି ଜଳ ଢାଳି
ସଞ୍ଜିବତୀ ଜାଳି
ସାଉଁଟି ହେବ କି
ସୁଖ ପସରା ?-୪

## ସନ୍ତତ ପ୍ରେମ -୨୯

ସକଳ ଘଟେ କରେ ବାସ
ଆଦ୍ୟନ୍ତହୀନ ସେ ପୁରୁଷ ||

ଆକାରେ ଘଟ ଭିନ୍ନ ଭିନ୍ନ;
ସର୍ବତ୍ର ବ୍ରହ୍ମ ସନାତନ ||

ସର୍ବ ସ୍ୱାଦରେ ଏକ ଭାବ;
ନଶ୍ୱର ପ୍ରେମର ପ୍ରଭାବ ||

## ମଧୁଶାଳା ପ୍ରତିସ୍ୱର -୩୦

ଆକାଶେ ଭାସିଲେ ଶଶୀ
ହସି ଉଠେ ମଧୁଶାଳା;
ବିଜନେ ବିଳପେ ବସି

ବିଷାଦ-ବିଧୁରା ବାଳା || -୧

ମଧ୍ୟରାତ୍ରେ ମଧୁଶାଳା
ମଦିରା ଲାଲିମାଭରା;
କାଳିମା ଉତ୍ସଙ୍ଗେ କାନ୍ଦେ
କାମିନୀ, କାଙ୍କ୍ଷିତ-ହରା || -୨

କାବେରୀ କାମିନୀ ଅଙ୍ଗେ,
ଅପାଙ୍ଗେ ଭଙ୍ଗିମା ଭରା;
ଦୁଃଖିନୀ ଅକ୍ଷି-ପଟଳେ
ବିକ୍ଷତ ଅକ୍ଷରା ଧାରା || -୩

ବାରବଧୂ ବାରାଙ୍ଗନା
ବିସ୍ତରେ ବିସ୍ତାରେ ଖେଳା;
ପଲ୍ଲୀ ପୁରେ ପୁରନାରୀ
ପରାଣେ ପ୍ରଜ୍ୱଳେ ଜ୍ୱାଳା || -୪

ଲମ୍ପଟ କୁଳକଳଙ୍କ
ପାଟଳ ଓଷ୍ଠକେ ଲୋଟେ;
କର୍ବଟ ପାକ-କୋଷ୍ଠକେ
ବିଷାଦ ନିଷଦ ଛୁଟେ || -୫

କୋଷ୍ୱରତ୍ନେ କାମାତୁରା
ରିକ୍ତବସ୍ତ୍ରା କ୍ଷିପ୍ତଦେହା;
ଅର୍ଭ-ଗର୍ଭ ଭୟାତୁରା

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ପ୍ରଯତ ସମସ୍ତସହା ||          -୬

ପ୍ରତ୍ୟୁଷ ଅରୁଷାକାଶେ
ସମୁହ୍ଣା ପ୍ରଭାତୀତାରା:
ଲମ୍ପଟ ପ୍ରମତ୍ତ ପ୍ରେମୀ
ବିଭ୍ରଷ୍ଟ ନିହ୍ନବହରା ||          -୭

କୁଟଙ୍କ କୁଟୀରେ ପ୍ରାତଃ
ଜାଗ୍ରତା ସ୍ତୁବତା ଜାୟା
ମାର୍ତ୍ତାଣ୍ଡ ମୂର୍ତ୍ତି ପୁରତଃ
ଭର୍ତ୍ତା ହିତେ ନତକାୟା ||          -୮

ମଧୁଶାଳା ମଧୁମାସ
ବିଳାସ ରଙ୍ଗୀମା ଭରା;
ପତିହରା-ପ୍ରତିସ୍ୱର
ବିଷାଦ-ରାଗିଣୀ-ଝରା ||          -୯

ବିଧୁର= ଖିନ୍ନ, ନିମଗ୍ନ ଇତ୍ୟାଦି [ସ୍ତ୍ରୀ=ବିଧୁରା]; ଉତ୍ସଙ୍ଗ= କୋଳ; କାଙ୍କ୍ଷିତହରା=ଯେ ଆକାଙ୍କ୍ଷିତ [ସ୍ୱାମୀ]କୁ ହରେଇଛି; କାବେରୀ= ଗଣିକା, ହର୍ଲୋଟ୍; ପଟଳ= ପରଦା; ବିକ୍ଷତ= ଆହତ; ଅକ୍ଷରା= କଥା, ଶବ୍ଦ; ବିସ୍ତର= ବିଛଣା; ଓଷ୍ଠକ= ଓଷ୍ଠ; କର୍ବଟ= ଗ୍ରାମ; ପାକ କୋଷ୍ଠକ= ରୋଷେଇ ଘର; ନିଷଦ= ବାଦ୍ୟ ତାନ; କୋସ୍ୱ= ଖଟ; ଅର୍ଭ= ସନ୍ତାନ; ପ୍ରଯତ= ଯତ୍ନଶିଳ; ସମସ୍ତସହା= ସର୍ବଂସହା; ଅରୁଷ= ଅରୁଣ ବର୍ଣ୍ଣ; ସମୁହ୍ଣ= ଉହ୍ଣିତ [ସ୍ତ୍ରୀ=ସମୁହ୍ଣା]; ବିଭ୍ରଷ୍ଟ= ପଳାତକ; ନିହ୍ନବ= ଗୋପନୀୟତା; କୁଟଙ୍କ= କୁଟା ଛପର; ସ୍ତୁବତା= ପୁଜାରିଣୀ; ମାର୍ତ୍ତାଣ୍ଡ= ସୂର୍ଯ୍ୟ; ଭର୍ତ୍ତା= ସ୍ୱାମୀ, ପତି;

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

## ରୋରୁଦ୍ୟମତୀ ବିଚିତ୍ରାଙ୍ଗସୂତି କହେ - ୩୧

କଲ୍ଲୋଳିନୀ ଜଳେ ନିଶ୍ଚଳ ସଲିଳେ ବ୍ରୀଳ ବଦନ କରି ଲୋକନ
ଭାଳେ ବ୍ୟାଘ୍ର ବାଳା କି ହେଲା କି ହେଲା ଏକଳ କେମନ୍ତ କାଟିବି ଦିନ;
କା ଲାଗି ତୋଳିବି ଏଲବ ସ୍ୱନ ?
ଜାତି ଯତ୍ର ନାହିଁ -- ଅଲକ୍ଷ୍ୟ କେ କାହିଁ ମିଳିବ କି ମୋର ବଲ୍ଲଭ ପୁଣ ?
କୁଳ -- ବୁଡ଼ିଲା ଜାଣ ||-୧

## ସନ୍ତପ୍ତା ନାୟିକା - ୩୨

ଲେଖିବାକୁ ବାକି ରହିଛି ଏବେ ବି ହୃଦୟ ଗହୀର କଥା |
ଧ୍ୱସ୍ତ ଅତୀତ କ୍ରନ୍ଦିତ ରୁତ ଉତ୍ପଥ ବିଜନତା | || -୧

ଲେଖି ଦିଏ ଖାଲି ପଙ୍କ୍ତିଟେ ସିନା ଆଗକୁ ପାରେ ନା ଲେଖି |
କୂଳବତୀ କୂଳେ ବାଳୀ ବସି ଭାଳେ ସୁନୀଳ କୁବଳ ଦେଖି || -୨

ବିଶ୍ୱପା ଦେଖି ଇନ୍ଦ୍ରପୁଷ୍ପା ସାରା ରାତି ଅଛି ଚାହିଁ,
ସରିତ ସଲିଳ ଚଳେ କଳ କଳ ସାଗରେ ମିଳିବା ପାଇଁ ||-୩

ପାଟଳ ମୁକୁଳ ବିସ୍ତାରି ଦଳ ଅଳି ପଥ ଅଛି ଚାହିଁ
ଚୁମ୍ବନ ଭାରେ ସ୍ନିଗ୍ଧ ଅଧରେ ଲୁଣ୍ଠିତ ହେବା ପାଇଁ || -୪

ଅହ୍ମନି କୋଳେ ଦଧିପୁଷ୍ପିକା ମରଣ ସମ୍ଭାରେ
ଅର୍ଭଗ ପାଶେ ବନ୍ଧନ ଆଶେ ବଲ୍ଲଭା ଅଭିସାରେ || -୫

କି ଲାଗି ଅବଳା ଅଶ୍ରୁ ଉଚ୍ଛୁଳା ଅର୍ଘ୍ୟର ଥାଳ ଧରି |

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଦୟିତ ଗଳାର  ସାଜିବାକୁ ମାଳା  ନିରତ ଚାଲିଛି ମରି || -୬

## ଯାଅ ସ୍ୱଗୃହେ ଫେରି - ୩୩

ତୃଷିତ ତ୍ରାସିତ ନୟନେ  କିସ ଦେଖ ସୁନ୍ଦରୀ,
କାହା ପଥ ହଜି ଗଲା କି  ଏହି ସରିତ ବାରି ? -୧

କି ଲାଗି ଅସଜ ମେଖଳା, ଆ ଗୋ ମୁକୁଳା-କେଶୀ,
ଅଳସ ମଣୀଚେ ଗଳିତ  କାଚ କଙ୍କଣରାଶି || -୨

ସରିତ ସଲିଳେ ସରାଗ  ସବୁ ଗଲା କି ଧସି ?
ପ୍ରବିଦ୍ଧ ଅଧରେ ବିଧୁର  ଧ୍ୱାନ କିମ୍ପାଁ ଉଦାସୀ ? -୩

ଲିଭି ଲିଭି ଗଲା ପୀରତି  ଦୀପ ସଳିତା ଅବା
ସଜଳ ଚକ୍ଷୁସ ଶଙ୍କିତ  ସଦା  ଶର୍ବରୀଦିବା ? -୪

ଅମା-ପୂର୍ଣ୍ଣମସୀ ବସିଛ  ଏଠି ମାନସ ମାରି ?
ଝୁରିଲେ ତ ଅଶ୍ରୁ ସରେନା, ଯାଅ ସ୍ୱଗୃହେ ଫେରି || -୫

## ସୁନ୍ଦରୀ ପରିଚର୍ଯ୍ୟା - ୩୪

ଖୁଲଣାସୁନ୍ଦରୀ ଲଳନା  ଆଗୋ ଛଳନାମୟୀ
ନୟନେ ଉଚ୍ଛଳ କଳନା  ତାର ତୁଳନା ନାହିଁ |  ||
କେଉଁ ଭୂତିମନ୍ତବାଞ୍ଛିତା  କାହା ସ୍ୱୀକୃତା ସତୀ,

| | | |
|---|---|---|
| ନରପତିସୁତା, ଦେବଦୁ- | ହିତା, ଦୈବତଦୂତୀ, | \|\| |
| ଅଥ ବା ପୟୋଧିନନ୍ଦିନୀ, | ଦୂର ଅମ୍ବୁଦବାଳା, | |
| କିମ୍ବା ଦୃଶାଦେଶେ ବିଭାସା | ସଙ୍ଗେ ବିଷାଦ ବୋଳା ? | \|\| |
| ଏ ମର୍ତ୍ତ୍ୟ ମଣ୍ଡଳେ କାଙ୍କ୍ଷିତ | ନିଧି ମିଳେ କି ତବ, | |
| କୁହ ଖୋଜି ଆଣିଦେବି କି | ଯେବେ ମୋ ପାଶେ ଥିବ ? | \|\| |

## କେଉଁଠି ଲୁଚାଅ ମଥା - ୩୫

ଧୂଆଁ ଧୂଆଁ ସେଇ ମେଘୁଆ ଆକାଶେ ଥାଇ,
କିଏ ଗୋ ତରୁଣୀ ସେ ଦିନୁ ରହିଛ ଚାହିଁ ?? -୧

ଭିଜା ଭିଜା ଓଠ, ଖୋଜିଲା ଖୋଜିଲା ଆଖି;
କିଏ ତୁମ ସାଥୀ, କହ ତୁମେ କାହା ସଖୀ || -୨

ଏକା ଏକା ସେଠି ଲାଗୁଥିବ ଅସହାୟ;
ଅଭିସାରିଣୀ ଗୋ କହ ପ୍ରିୟ-ପରିଚୟ || -୩

କହ ତୁମ ନାମ, ସନ୍ତକଟିଏ ଦିଅ;
ଖୋଜି ତୁମ କଥା କହି ଦେବି ନିଶ୍ଚୟ || -୪

ଯୁଗାନ୍ତକର ହଜିଲା କାହାଣୀ ଧରି;
ସୌମ୍ୟା ରାଗିଣୀ ପ୍ରୀତି ଗାଥା ଗୁଞ୍ଜରି; -୫

କାହିଁ ହଜି ଯାଅ, କେଉଁଠି ଲୁଚାଅ ମଥା
ଦେବ-ଉଦ୍ଭୂତା ଆହେ ଅମ୍ବର-ସୁତା ? -୬

## ଧୂଆଁ ଧୂଆଁ ମେଘୁଆ ଆକାଶେ - ୩୬

ମନେ ପଡ଼େ ମୋ ପ୍ରାଣ ପ୍ରତିମା
ପ୍ରତି କ୍ଷଣେ ମୋତେ ଚାହିଁ ରହେ;
ଭୀତି ଭରା ପ୍ରୀତି ପ୍ରସ୍ତାବନା
ଭୀରୁ ଭ୍ରୂଲତାରେ କଥା କହେ || -୧

ଖୋଜି ତାକୁ ନିଶୀଥ ଦିବସ
ସଞ୍ଜେ ପୁଣି ମନ ଖୋଜୁ ଥାଏ;
ଖୋଜି ଖୋଜି ଯାଏ ଯେତେ ପାଶ
ସେତିକି ସେ ହଜି ହଜି ଯାଏ || -୨

ସେହି ଦିନୁ ଚାଲିଛି ଏ ଖୋଜା,
ଆଶା ମିଶା ଖୋଜା ଆଜି ଯାଏ;
ପ୍ରତେ, ବାଜେ ପ୍ରତ୍ୟାଶାର ବାଜା,
ମିଳି ନାହିଁ ମିଳି ଯିବ ସିଏ || -୩

ଖୋଜା ଖୋଜି ଉପରତି ବିନା,
ଚାଲିଛି ଏ ଖୋଜା ବଢ଼ି ବଢ଼ି;
ସାପ ଖାଏ; ପଡ଼େ ପୁଣି ଦାନା;
ବେଳେ ବେଳେ ଶିଡ଼ି ଯାଏ ଚଢ଼ି || -୪

ଦିନେ ଦିନେ ଚାହିଁ ଫାଙ୍କା ଫାଙ୍କା
ଆଖି ପତା ଭିଜି ଭିଜି ଆସେ;
ମେଘୁଆ ମେଘୁଆ ଫିକା ଫିକା
ଧୂଆଁଳିଆ ସେ ଦିଶେ ଆକାଶେ || -୫

କହି ଯାଏ ଇସାରା ଇସାରା,
"ରହିଛି ମୁଁ ତୁମ ପଥ ଚାହିଁ;
ଦିଅ ତୁମ ହସ, ମୋ ପସରା;"
ହସି ଦୁହେଁ କାନ୍ଦୁ କଇଁ କଇଁ || -୬

## କାନ୍ଦ ନା - କନ୍ଦା ନା -୩୭

ତାର - ପୂରିବାରେ ବେଳ
ସାରି - ବାଲିଧୂଳି ଖେଳ
ସେ ତ - ଆରପୁରେ ଚଳିଲା ଲଳନା; {୨}
ଚାଲି - ଯାଇଛି ସେ ଯହିଁ
କେହି - ସେଠୁ ଫେରି ନାହିଁ
ହତ - ଭାଗିନୀରେ କାନ୍ଦ ନା କାନ୍ଦ ନା; {୨}
----
ଏ ବିଧାନ ପୁରୁଣା ...
ପଛେ ଛାଡ଼ି ମିଛ ମାୟା
ଜୁଇରେ ଜଳେଇ କାୟା
ହଜି ଯିବେ ଜଣେ ଜଣେ
ନ ପଡ଼ିବ ଛାୟା;
ଦଣ୍ଡେ ନ ରହି ସଂସାର
ଚାଲି ଥିବ ପଥେ ତାର

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଆଖି ଖୋଲି ଅନା |
ହତ -  ଭାଗିନୀରେ ... {୨} |
----------X--------                    ||୧||

ଫୁଲି - ମୁଖ ନାକ ଆଖି
ଗଳା - ତୋ ଗଲାଣି ଶୁଖି
ହେଲେ - ଘେନିବ କେ ଆନ ତୋ ଯାତନା; {୨}
ଖସି - ଗଲାଣି ମେଖଳା
କେଶ - ପଡ଼ିଛି ମୁକୁଳା
ତୋତେ - ଦିନ ରାତି ପଡୁନି କି ଜଣା ? {୨}
----

ଏବେ - ଶୋଇ ଯା ବାମା....
ଦେଖ ଏ ଘନ ଅନ୍ଧାରେ
କଳା ମେଘେ ଅନମ୍ବରେ
        ବିଜୁଳି ଛନକା ମାରେ,
ଛାତି ଥରଥରେ;

ପାଖେ ଅଛି କହ କିଏ
ଆପଣା ଘରେ ସଭିଏଁ
କଲେଣି ବିଛଣା |
ହତ - ଭାଗିନୀରେ ନିରତ କାନ୍ଦ ନା,
ଆରେ - ଅଭାଗିନୀ, ତୁଚ୍ଛାକୁ କାନ୍ଦ ନା |
--------X--------                    ||୨||
ବେନି - ଅପତ୍ୟ ତୋହର
ସେ ତ - ବାଳୁତ କୁମର

ତନ୍ଦ୍ରା - ତୁରେ ଅନାହାରେ ଗଲେ ଶୋଇ {୨}
ଦେଖି - ତୋ' ଆଖିର ଜଳ
ଦୁହେଁ - ଡହଳ  ବିକଳ,
ଏକ - ଆନ ପରେ ହାତେ ହାତ ଥୋଇ; {୨}
----
ଏବେ - ଭାଙ୍ଗି ପଡ଼ନା
ଆତୁରେ କଲେ ତୁ ରୋଳ
ଆସି ଜନ ମାଳ ମାଳ
        ପାଶେ ବସି ତୋ ଆଖିରୁ
ପୋଛି ଦେବେ ଜଳ;
ଚାଖିବାକୁ ରୂପ ଶିରୀ
ରହିବେ ତୋ ହାତ ଧରି
ଶୁଣ ସୁନୟନା |
ତାଙ୍କ - ଭରସାରେ ଜମା ତୁ କାନ୍ଦନା |
ପର - ପୁରୁଷକୁ ଭରସା କରନା;
ପଶୁ - ମଣିଷକୁ କଷଣ କହନା |
--------X--------    ||୩||

ଶୁଣି - ବାଳୀ କରି ଅଳି --
କହେ - କେନ୍ଦରା ବଜାଳୀ,
ଆଉ - କରନା ତୁ ମୋତେ ଆନମନା; {୨}
ବୁଲି - ବୁଲି ଗଳି ଗଳି
ପାତି - ଦେଇ ଭିକ୍ଷାଥାଳୀ
ଆନ - ଅପତିକୁ ଏ ଗୀତି ଶୁଣାନା; {୨}
----
ଗୀତ ଗାଇ କନ୍ଦାନା....
ରେ ନିଠୁର କଳାକାର

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଭରି ଦେବି ଥଳୀ ତୋର

ଫେରି ଯାଅ ନିଜ ଘର

ବଜାନା କାନ୍ଦଣା;

କିଆଁ ଗାଇ, ମନ ମୋହି,

କେନ୍ଦରାରେ ସୁର ଦେଇ

ବଢ଼ାଉ ବେଦନା ।

ଆଜି – ଥାଉ, ମୋତେ ଆଉ ତୁ ଶୁଣା ନା;

ମୋତେ - କରନା ଅଧିକ ଆନମନା;

କୋହ - ଦାହରେ ତୁ ଜାଳି ପୋଡି ଦେ ନା;

ଭିକ୍ଷା - ଥଳୀ ଦେଖା ନ କରି ବାହାନା ।

--------X-------- ||୪||

## ବିଦୃଗେଷା କବିବଲ୍ଲଭା -୩୮

ଜନନୀ ଭଗିନୀ କନ୍ୟା

ଯୋଷିତା ମମତା ବନ୍ୟା

ତାପସୀ ମାନସୀ ଧନ୍ୟା

କବି ବଲ୍ଲଭା ।

ଭାଷା ବିଳାସିତା ପାରି

କୁସୁମିତ ଆଶା କଳି

ଦରିଦ୍ର କାନ୍ତାର ମଲ୍ଲୀ

ପ୍ରଭା ସମ୍ଭବା ।

ବର୍ତ୍ତମାନେ ଶୋଭିତ ସଭା;

ବିପ୍ରଯୋଗେ ଉଦ୍ବେଳିତ ଶର୍ବରୀ ଦିବା ।

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

କିଦୃକ୍ = କେଉଁପରି; ଏଷା = ଏହି [ଏସ = ଏହି ରସ୍ତ୍ରୀଲିଙ୍ଗ]; କିଦୃକ୍ + ଏଷା = କିଦୃଗେଷା = କେଉଁପରି ଏହି; କବିବଲ୍ଲଭା = କବିପ୍ରିୟା; ଜନନୀ ଭଗିନୀ କନ୍ୟା [ମାତା, ଭଗ୍ନୀ ଓ ଝିଅ]; ଯୋଷିତା ମମତା ବନ୍ୟା [ମମତା ପରିପୂର୍ଣ୍ଣା ସ୍ତ୍ରୀ]; ତାପସୀ ମାନସୀ ଧନ୍ୟା [ମନୋକଳ୍ପିତା ତପସ୍ୟାରତା (ହେଇ ଥିବାରୁ) ଧନ୍ୟା]; କବିବଲ୍ଲଭା | [କବିପ୍ରିୟା] ଭାଷା ବିଳାସିତା ପାରି [ଭାଷାର ଚାତୁରୀଠୁ ପରପାରିରେ]; କୁସୁମିତ ଆଶା କଳି [ଆଶାର ପ୍ରସ୍ଫୁଟିତ କଢ଼ି]; ଦରିଦ୍ର କାନ୍ତାର ମଲ୍ଲୀ [ଦରିଦ୍ର (କବି) ର ଅଗଣା ମଲ୍ଲୀ]; ପ୍ରଭା ସମ୍ଭବା | [(ଜ୍ଞାନର) ଉଜ୍ଜ୍ୱଳତାରୁ ଜନ୍ମିତା]; ବର୍ତ୍ତମାନେ ଶୋଭିତ ସଭା, [(ତାଙ୍କ) ଉପସ୍ଥିତିରେ (କବିଙ୍କ) ସଭା ସୁଶୋଭିତ (ଏବଂ)]; ବିପ୍ରଯୋଗେ ଉଦ୍ବେଳିତ ଶର୍ବରୀ ଦିବା | [(ଏବଂ ତାଙ୍କ) ବିରହରେ (କବିଙ୍କ) ରାତି ଦିନ ଉଦ୍ବିଗ୍ନ ଥାଏ]

## ଭିନ୍ନତା -୩୯

ଭିନ୍ନ ଭିନ୍ନ ଜୀବର ପରାଣେ; ଭିନ୍ନ ସ୍ୱର ଗୁଞ୍ଜରଣ ଆଣେ ||
ସତ୍ତା ମଧ୍ୟେ ଏହି ବିଭିନ୍ନତା; ସରଜିଲେ ସେ ପରମ ପିତା ||
କଳ୍ପନାରେ କେତେ ଭଳି ଭଳି; ଚରାଚର ଗଲେ ସିଏ ଗଢ଼ି ||
ହେଜି ବିଶ୍ୱ ସେ କୃପାରେ ଚଳେ; ସର୍ବେ ନତ ତାଙ୍କ ପଦ ତଳେ ||
ଦେବ ନର ସ୍ଥାବର ଜଙ୍ଗମ; କରୁ ଥାନ୍ତି ତାଙ୍କ ଗୁଣ ଗାନ ||
ଉପାସନେ ଭିନ୍ନ ଭିନ୍ନ ମତେ; ଈଶ୍ୱରଙ୍କୁ ଭଜନ୍ତି ସମସ୍ତେ ||
ବାଇବେଲ୍, ଗୁରୁଗ୍ରନ୍ଥ ଗୀତା; କୋରାନ୍ ବି ତାଙ୍କରି ଦୁହିତା ||
ସଭିଙ୍କର ଯେଣୁ ସିଏ ପିତା; ବୃଥା ଆମ ଭିତରେ ଭିନ୍ନତା ||
ସେହି ଏକ ସଭିଙ୍କ ଶରଣ; ଏ ଭିନ୍ନତା ବାହ୍ୟ ଅବରଣ ||
ଘେନି ଦେଶ କାଳ ପାତ୍ର ସ୍ଥିତି; ହୁଏ ବାହ୍ୟ ଭିନ୍ନତାର ଉତ୍ପତ୍ତି ||
ଭିନ୍ନ ଏକ ଥିଲା ମୋ ବୟସ; ଝରୁଥିଲା କଳ୍ପନାର ରସ ||
ହଜିଲାଣି ଏବେ ସେ ଅତୀତ; ଭାଳି ମନ ହୁଏ ସନ୍ତାପିତ ||
ଭିନ୍ନତା ହିଁ ସୃଷ୍ଟିର ବୈଚିତ୍ର୍ୟ; ତହୁଁ ହୁଏ କଳ୍ପନା ଉଦୟ ||
କଳ୍ପନାକୁ କରି ଆଲମ୍ବନ; ଭରି ଉଠେ କବିତାର ପ୍ରାଣ ||
ସ୍ୱଚ୍ଛ ମନେ ସଜାଡ଼ିଲେ ଭାବ; ହୁଏ ସ୍ୱଚ୍ଛ ସାହିତ୍ୟ-ଉଦ୍ଭବ ||
ବେଦଶାସ୍ତ୍ରେ କବିତାର ବଳେ; ପ୍ରଭୁ ଆଦ୍ୟ ମନ୍ତ୍ର ଉଚ୍ଚାରିଲେ ||

ପିତାପୁତ୍ର ପରମ୍ପରା କ୍ରମେ;　　　　　　ସେ କବିତା ଆଜି ଗ୍ରାମେ ଗ୍ରାମେ ||
ଘରୁ ଘର ଚଳ ଗୋ କବିତା;　　　　　　ଘଟେ ଘଟେ ଯେଣୁ ବିଶ୍ୱପିତା　||

## ଋଣଂ କୃତ୍ୱା ଘୃତଂ ପିବେତ୍　　　　　　-୪୦

କିଏ କାହା ଋଣୀ ହୁଏ ନାହିଁ ଜାଣି; ଯେ ହେଉ ଦାତା, ଗ୍ରହୀତା |
ଦୁଗ୍ଧରୁ ଉତ୍ପନ୍ନ ଶୁଦ୍ଧ ଘୃତ ସମ ଲାଗି ରହୁ ଆତ୍ମୀୟତା　　　||୧||
ଏ ଦେହ ଜଳିଲେ ଆଉ ନ ଫେରିବ; ଥିବା ଆମେ ଯେତେ ଦିନ |
ଋଣ ତ କରୁଛେ, ନ ଛୁଇଁବା ମଦ୍ୟ, କରି ଯିବା ଘୃତ ପାନ　　　||୨||

ଦୁଗ୍ଧଜାତ ମଧ୍ୟେ ଶୁଦ୍ଧତମ ଘୃତ ସୋମତତ୍ତ୍ୱ ସେ ଅନ୍ତିମ
ଶୁଭଚିନ୍ତା ଶୁଭକାର୍ଯ୍ୟ ଘୃତ ସମ; ଅଧର୍ମ ମାଧୁରୀ ପାନ　　　||୩||
ଫେରିବନି ଜୀବ, ଏ କଥା କହିବ -- ନାହିଁ କେହି ମହା ଋଷି |
ଋଣୀ ହେଲେ ମଧ କରି ଶୁଭ କାର୍ଯ୍ୟ ଋଣ-ଭାରୁ ହେବ ଖସି　　||୪||
'କରେନି ମୁଁ ଋଣ' -- ଏତେ ଟାଣପଣ ଅଟେ ମିଥ୍ୟା ଅହଂକାର |
ପିତା ମାତା ଗୁରୁ ସ୍ୱଜନ ସଂସାର -- ଋଣୀ ଆମେ ସଭିଙ୍କର ||୫||
ପୂରୁବ ପୁରୁଷ ଦେଇ ଚାଲିଗଲେ କି ବା ନେଲେ ଆମଠାରୁ |
ସତ୍କର୍ମ ସଦ୍ଭାବ କଲେ ସିନା ଆମେ ବର୍ତ୍ତିବା ଋଣ-ଭାରରୁ　　||୬||
ଋଣ ତ କରୁଛ, ପରିଶୋଧ ହେବ ଘୃତପାନ କର ନଚେତ୍ |
କି ଜନ୍ମ ପାଇବ କିଏ ସେ କହିବ, "ଋଣଂ କୃତ୍ୱା ଘୃତଂ ପିବେତ୍"　||୭||
ମହାଋଷିଙ୍କର ମହାବାକ୍ୟ ଅତିଚାର କଲେ ଜନପଦ
ଏ ପବିତ୍ର ଭୂମେ ପୂର୍ବଜ ଭୋଗିଲେ ବଂଶଜଙ୍କ ଅପବାଦ　　||୮||

## ପ୍ରକୃତିର ଅଭିସାର ଗାଥା　　　　　　-୪୧

ନ ଥିଲା ବ୍ୟୋମନ ବାୟୁ ଅଗ୍ନି ଜଳ ଭୂମି ।
ଅନ୍ଧକାର ବେଢ଼ିଥିଲା ଅନ୍ଧକାରେ ତୁମି ।। -୧-

ଘଟନା ବିହୁନେ  କାଳ ପ୍ରମିତିରହିତ
ଜଗତ ବିହୁନେ ଥିଲି ପ୍ରଶୁକ୍ତ ଅତ୍ୟନ୍ତ ।। -୨-

ସକଳ ଜୀବାତ୍ମା ଥିଲ ସମ୍ପୂର୍ଣ୍ଣ ମୂର୍ଚ୍ଛିତ,
ପରମପିତା- ଉଲ୍ଲାପେ ଅଭୟ-ଆଶ୍ରିତ ।। -୩-

ନିରବଧି ପ୍ରତୀକ୍ଷାରେ ଥିଲି ଏକା ଏକା ।
ବହୁ ଚତୁର୍ଯୁଗୀଠାରୁ ଦୀର୍ଘ ସେ ପ୍ରତୀକ୍ଷା ।। -୪-

ପରମପୁରୁଷଙ୍କଠୁ ପାଇ ମୁଁ ଆଦେଶ
ପରମ୍ପରା କ୍ରମେ ଧୀରେ ଗଢ଼ିଲି ଭୂବସ ।। -୫-

ସମଗ୍ର ପ୍ରଳୟେ, ପୁଣି ନବ କଳ୍ପାରମ୍ଭେ
ପରମାତ୍ମା ଅର୍ଚ୍ଚା ବଳେ ରହିଥିଲି ଦମ୍ଭେ ।। -୬-

ଅଦୃଷ୍ଟେ ମୋ ଥିଲେ କାହିଁ ମନୁ ମାର୍କଣ୍ଡେୟ ।
ଯତ୍ନେ ଧରି ନବକଳ୍ପ ଗ୍ରୀଷ୍ମହାସ ଚୟ ।। -୭-

ପ୍ରଜ୍ଞା, ଅହଂ, ମନ, ଚିତ୍ତ ଗୋଟି ପରେ ଗୋଟି
ନବକଳ୍ପ କଳ୍ପେ ଗଲି ମୋ ଦେହୁ ପ୍ରକଟି ।। -୮-

ଗୁଣ, ତନ୍ମାତ୍ରା ସଙ୍ଗତେ ଇନ୍ଦ୍ରିୟ ପଞ୍ଚକ ।
ତୁମ ପ୍ରସାଦନେ କଲି ଆଧାନେ ଉନ୍ମୁଖ ।। -୯-

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଲିଙ୍ଗଶରୀର, ତହିଁରୁ ପଞ୍ଚ ମହା ତତ୍ତ୍ୱ |
ପଞ୍ଚୀକୃତେ ତହୁଁ ପୁଣି ପଞ୍ଚ ମହାଭୂତ || -୧୦-
ଜଳ ସ୍ଥଳ ଅଗ୍ନି ବାୟୁ ପ୍ରଚଣ୍ଡ ସଙ୍ଗ୍ରାମେ |
ଛାୟାପଥ, ତାରାପୁଞ୍ଜ ମହାକାଶଧାମେ || -୧୧-

କ୍ରମେ ପୁଣି ଅଗଣିତ ଭୂମର୍ତ୍ତ୍ୟ ମଣ୍ଡଳେ
ରଚିଲି ସଙ୍ଗ୍ରାମ ବାୟୁ ଅଗ୍ନି ଜଳେ ସ୍ଥଳେ || -୧୨-

ସେ ମହାପ୍ରଘର୍ଷ ଜ୍ୱାଳା ବ୍ରହ୍ମାଣ୍ଡ ବିଗ୍ରହେ |
ସହିଛି ଅସୀମ, ତୁମ ଆଗମ ଆଗ୍ରହେ || -୧୩-

ହ୍ଲାଦକ ପର୍ଯ୍ୟାସେ  କେତେ କାଳେ ଧୀରେ ଧୀରେ |
ସରିତ ସିନ୍ଧୁ ପର୍ବତ ବଲ୍ଲୁର ସଞ୍ଚରେ || -୧୪-

ଧୀରେ ଭୂମଣ୍ଡଳ ହେଲା ବାସ ଅର୍ହତ୍ତମ |
ମାର୍କଣ୍ଡେୟ କରିଗଲେ କଣିକା ବପନ || -୧୫-

ତୁମେ ସର୍ବେ ଜୀବ ହେଲ ପ୍ରସ୍ୱାପୁ ଉତ୍ଥିତ |
ମୁଁ ଆଧାର ପିଣ୍ଡ ତୁମେ ଆଧେୟ ସଂସ୍ଥିତ || -୧୬-
ଆରାଧିକା ରାଧା ମୁଁ ଗୋ ତୁମେ ପ୍ରସାଦିତ |
ଆହେ କୃଷ୍ଣ, ବିମୋହନ, ଧରାବତରିତ || -୧୭-
ଆରାଧିକାରାଧିତ ଏ ପବିତ୍ର ସମ୍ବନ୍ଧ
ଆଧାରାଧେୟ ବନ୍ଧନ ନିସର୍ଗ ସମସ୍ତ || -୧୮-

ତୁମେ ମୋ ଉପାସ୍ୟ ଦେବ, ପରିଚାର୍ଯ୍ୟ ମୋର
କକ୍ଷେ କକ୍ଷେ କରୁଥିବି ତୁମ ଅଭିସାର || -୧୯

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ଟିପ୍ପଣୀ: "ପ୍ରକୃତିର ଅଭିସାର ଗାଥା" [ପ୍ରକୃତି ବା ଜଡ଼ ପିଣ୍ଡ ପୁରୁଷ ବା ଜୀବାତ୍ମା ସକଳକୁ ତା ପ୍ରେମ-ପ୍ରତୀକ୍ଷାର କାହାଣୀ ଶୁନାଉଛି] ପଦ - ୦୧ - ବ୍ୟୋମନ= ଆକଶ, **ether** ପଦ - ୦୨ - ପ୍ରମିତି= ମାପ (ବ୍ୟବସ୍ଥା); କିଛି ଘଟନା ନ ଥିବାରୁ, ଘଟନାର ଅନ୍ତରାୟ ବିହୁନେ ସମୟ ମାପିବାର ଉପାୟ ନଥିଲା | ଜଗତ= ଗଚ୍ଛତି ଇତି ଜଗତ୍, ଗତିଶୀଳ (କିଛି) ନ ଥିବାରୁ ପ୍ରଶୁକ୍ତ (ଏକାକୀ, **lonely**) ଥିଲି | ପଦ - ୦୩ - ଉଲ୍ଲାପ= କୋଳ, କ୍ରୋଡ଼; ପଦ - ୦୪ - ନିରବଧି= ଅବଧି ନିର୍ଦ୍ଧାରିତ ବା ଜ୍ଞାତ ନ ଥିବା; ଚତୁର୍ଯୁଗୀ= ସତ୍ୟରୁ କଳି ଯାଏ ୪ ଯୁଗ; ପଦ - ୦୫ - ପରମପୁରୁଷ= ଈଶ୍ବର; ପରମ୍ପରା କ୍ରମେ= ପର୍ଯ୍ୟାୟ କ୍ରମେ, ଯାହା ପରେ ଯାହା ଗଢ଼ିବା ନିୟମ ବା ଯୁକ୍ତିସଂଗତ; ଭୂବସ=ଭୂମି ବା ପୃଥିବୀରେ ବାସୋପଯୋଗୀ ପରିବେଶ; ପଦ - ୦୬ - ଅର୍ଚା=ଅର୍ଚନା; ମାର୍କଣ୍ଡେୟ= ଏହି କଳ୍ପର ମନୁ; ପଦ - ୦୭ - ଅଦୃଷ୍ଟେ= (ଅନ୍ଧକାର ହେତୁ ମୋ) ଅଦୃଷ୍ଟରେ; ଗ୍ରୀଷ୍ମହାସ= ଗ୍ରୀଷ୍ମରେ ଯାହା ଝଡ଼ିପଡ଼େ ଅର୍ଥାତ୍ ବୀଜ; ପଦ - ୦୮ - ପ୍ରଜ୍ଞା= ବୁଦ୍ଧି; ଅହଂ= ଅହଂକାର; ନବକଳ୍ପ କଳ୍ପେ= ନୂତନ ସୃଷ୍ଟି ଉଦ୍ଦେଶ୍ୟରେ; ପ୍ରକଟି= ପ୍ରକଟ କରି, ପରିସ୍ଫୁଟ କରି; ପଦ - ୦୯ - ଗୁଣ= ରଜ, ତମ ଓ ସତ୍ତ୍ବ; ତନ୍ମାତ୍ରା= ଶବ୍ଦ, ସ୍ପର୍ଶ ରୂପ, ରସ ଓ ଗନ୍ଧ, ଏହି ୫ ଧର୍ମର ଆହରଣ ଶକ୍ତି; ଇନ୍ଦ୍ରିୟ ପଞ୍ଚକ= ଉପରୋକ୍ତ ୫ ଧର୍ମକୁ ଆହରଣ କରିବାର ସୂକ୍ଷ୍ମ ୫ ସାଧନ; ପ୍ରସାଦନେ= ପ୍ରସାଦନ (ଭୋଗ) ନିମିତ୍ତ; ଆଧାନେ= ଆଧାନ (ଯତ୍ନ) ସହ; ପଦ - ୧୦ - ଲିଙ୍ଗଶରୀର= ସୂକ୍ଷ୍ମ, ମୂଳ ଭୂତ ବା ସୃଷ୍ଟ ପଦାର୍ଥ; ମହାତତ୍ତ୍ବ= ଆକାଶ, ବାୟୁ, ଅଗ୍ନି, ଜଳ ଓ ସ୍ଥଳ: ମୂଳ ରୂପରେ; ପଞ୍ଚିକୃତେ....ପଞ୍ଚ ମହାଭୂତ= ଏହି ପଞ୍ଚତତ୍ତ୍ବର ପଞ୍ଚୀକରଣରେ; [ପଞ୍ଚୀକରଣ = ଆକାଶର ପ୍ରତି କଣିକାରେ ଅର୍ଦ୍ଧାଂଶ ଆକାଶ, ଏକ ଅଷ୍ଟଂାଶ ଲେଖାଏ ବାୟୁ, ଅଗ୍ନି, ଜଳ ଓ ଭୂମି ମିଶି ଆକାଶ {**ether**} ମହାଭୂତ ହୁଏ; ଏହି ପରି ଅନ୍ୟ ସମସ୍ତ ମହଭୂତ ଗଠିତ ହୁଅନ୍ତି]; ପଦ - ୧୧, ୧୨ ଓ ୧୩ - ପ୍ରଘର୍ଷ= ସଂଘର୍ଷ; [ବାୟୁ, ଅଗ୍ନି, ଜଳ ଓ ଭୂମି ବ୍ୟୁତ୍ପାତରେ ଭାଗ ନିଅନ୍ତି, ଆକାଶ ଭାଗ ନିଏ ନାହିଁ]; ପଦ - ୧୪ - ହ୍ଲାଦକ= ହର୍ଷ ବା ଆଶ୍ବସ୍ତି; ପର୍ଯ୍ୟାସେ= ପର୍ଯ୍ୟାସ (ଚତୁର୍ଦ୍ଦିଗରେ କ୍ଷେପଣ) କରି; ବଲ୍ଲୁର= ବାଲୁକାମୟ ବା ମରୁ ଭୂମି; ପଦ -୧୫ - ଅର୍ହତ୍ତମ= ଉପଯୋଗୀ; କଣିକା= (ନୂତନ ସର୍ଗ ପାଇଁ ସେହି ମାର୍କଣ୍ଡେୟ ମନୁ ରଖିଥିବା) ବୀଜ; ପଦ – ୧୬ - ପ୍ରସ୍ବାପୁ= ପ୍ରସ୍ବାପ (ନିଦ୍ରା)ରୁ; ଆଧାର ପିଣ୍ଡ= (ତୁମକୁ, ଅର୍ଥାତ୍ ଜୀବାତ୍ମା ମାନଙ୍କୁ) ଧାରଣ କରିଥିବା ଦେହ; ଆଧେୟ= (ଆଧାରିତ, ନିବାସୀ) ଜୀବାତ୍ମା ସମୂହ; ସଂସ୍ଥିତ= ସଂସ୍ଥାପିତ (ସେହି ଜୀବାତ୍ମା ସମୂହ); ପଦ - ୧୭ - ପ୍ରସାଦିତ= ତୁଷ୍ଟିକୃତ, ପୂଜିତ; କୃଷ୍ଣ= ଯେ (ମୋତେ, ଅର୍ଥାତ୍ ପ୍ରକୃତିକୁ) ଆକର୍ଷଣ କରେ; ଧରାବତରିତ= (ପ୍ରଳୟ ଅନ୍ତେ ନୂତନ ସର୍ଗରେ) ଧରାରେ ଅବତରଣ କରିଥିବା; ପଦ - ୧୮ - ଆରାଧିକାରାଧିତ= ଆରାଧିକା +ଆରାଧିତ (ପ୍ରକୃତି ବା ଜଡ଼ ପିଣ୍ଡ ଓ ଜୀବାତ୍ମା ସମୂହ); ଆଧାରାଧେୟ= ଆଧାର +ଆଧେୟ (ପ୍ରକୃତି ବା ପିଣ୍ଡ ହେଉଛି ଆଧାର ବା ଦେହ ଓ ଜୀବାତ୍ମା ସମୂହ ସେଥିରେ ଆଧେୟ ବା ଆଶ୍ରିତ ଦେହୀ); ନିସର୍ଗ=ସୃଷ୍ଟି, ଜୀବ [ସମଗ୍ର ସୃଷ୍ଟିରେ କିଏ କେଉଁଠି ଆଶ୍ରୟ ତ ଅନ୍ୟ କେହି ସେଥିରେ ଆଶ୍ରିତ, ପୁଣି ଅନ୍ୟଠି ଯେ ଆଶ୍ରିତ ସେ ମଧ୍ୟ କାହାର ଆଶ୍ରୟ ହେଇ ପାରେ, ଯଥା ଭୂମି ଆଶ୍ରୟ, ଗୃହ ଆଶ୍ରିତ ଓ ଗୃଗ ଆଶ୍ରୟ ତ ତନ୍ମଧ୍ୟରେ ଆସବାବ ଆଶ୍ରିତ, ଆସବବ ଆଶ୍ରୟ ହେଲେ ତଦୁପରେ ଗୃହୋପକରଣ ଆଶ୍ରିତ, ଇତ୍ୟାଦି]; ପଦ - ୧୯ - ପରିଚାର୍ଯ୍ୟ= ପରିଚର୍ଯ୍ୟାର ଯୋଗ୍ୟ ବା ବିଷୟ; କଳ୍ପେ କଳ୍ପେ= ପ୍ରତି ସୃଷ୍ଟିରେ (ପ୍ରଳୟାବସ୍ଥାରେ ଓ ନବସର୍ଜନା ବେଳେ); ଅଭିସାର=ପ୍ରେମ-ପ୍ରତୀକ୍ଷା;

# ପୁତ୍ରଶୋକ -୪୨

**ରିକ୍ତ ତାହାର ମଣିବନ୍ଧନ,**

**ହୃଦସ୍ପନ୍ଦନ ଧୀର,**

ଅଗ୍ରନାସାରେ ବୋହୁଛି ପବନ,
ଅଳ୍ପ ଜୀବନ ତାର ।
ପୁତ୍ରଶୋକରେ କ୍ରନ୍ଦନ କରେ ବସି;
ବିଳାପେ ବ୍ୟଥିତ ଉଭା ହେଇଗଲେ
ବ୍ୟାସଦେବ ମହାଋଷି ।
ପଚାରିଲେ - ମାତା କୁହ
କିଏ ତୁମେ ଦେବି ! କି ସେବା କରିବି,
କେମିତି ପୋଛିବି ଲୁହ ? -୧

ଆଖିଲୁହ ପୋଛି କହିଲେ ଜନନୀ –
ଏହି ମୋର ବେନି ପୁଅ:
ଜ୍ଞାନ, ବୈରାଗ୍ୟ ମରି ପଡିଛନ୍ତି,
ସଢୁଅଛି ତାଙ୍କ ଦେହ ।
ଦୁଃଖୀରଙ୍କି ସେବା କରୁଥିଲେ ଦୁହେଁ
ତ୍ରିଭୁବନେ ଥିଲା ଡାକ;
ଦୁହେଁ ଗଲାପରେ ଭକ୍ତି ମୁଁ ଏକା,
କରୁଅଛି ବସି ଶୋକ ।
ନିଜକଥା ଭାବୁ ନାହିଁ,
ଆର୍ତ୍ତ ମାନବ କେମିତି ତରିବେ
ସେଇକଥା ଭାବେ ମୁହିଁ । -୨

ମହାଋଷି ତହୁଁ ଭାଷିଲେ ବଚନ –
କଳିକାଳ ଆସିଗଲା,
ତୁମ ସନ୍ତାନ ବଞ୍ଚିବେନି ମାଆ,
କାଳ ତାଙ୍କୁ ଗ୍ରାସିନେଲା;

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ତୁମରି ପଣତ ଧରି
ଚାରିବର୍ଣ୍ଣ ଚାରି ଆଶ୍ରମ ହେବେ
ଭବସିନ୍ଧୁଜଳ ପାରି | -୩

## ମୃତ୍ୟୁଦଣ୍ଡାଦିଷ୍ଟ ଉଚ୍ଛୃଙ୍ଖଳଙ୍କୁ ପଦେ -୪୩

ଅଭେଦ୍ୟ ଅନ୍ଧାର ମଧ୍ୟେ ଔଦ୍ଧତ୍ୟର ଉଗ୍ର ନିଦର୍ଶନ ,
ଉଚ୍ଛୃଙ୍ଖଳ ଉନ୍ମାଦନା-ମଦ-ମତ୍ତ ବିଭ୍ରାନ୍ତଯୌବନ ! -୧

ଦେବେର୍ଷ୍ୟ ମାନବ ଜନ୍ମ ଜ୍ଞାନ-ଧ୍ୟାନ-ସାଧନର ଶକ୍ତି
ସବୁ ଥାଉଁ ନ ରଖିଲ ଶୀଳତାରେ ତିଳେ ଅନୁରକ୍ତି | -୨

ଅକାଳ-କାଳ-କଳଙ୍କ ବୋଲି, କୁଳ ଚଳିଲ ଭସାଇ
ପିତାମାତାବନ୍ଧୁସଖାସହୋଦର ମୁଖେ ଲଜ୍ଜା ଦେଇ | -୩

ଫାସିର ରଶିରେ କଷି ଶ୍ୱାସରୁଦ୍ଧ ମରଣର ଡାକ
ମୌନେ କାନେ ପରିଜନେ ଶୁଣୁଥିବେ - ବେଳ ହେଲା ପାଖ |-୪

ଯେତେ ବି ବୁଝିଲେ ଯିଏ ଆତ୍ମୀୟଙ୍କ ହୃଦ-ଉଦ୍ବେଳନ
ପଥେ , ପ୍ରାନ୍ତେ ଜନପଦେ ଲାଗିଥିଲେ ଜନ-ଆନ୍ଦୋଳନ , -୫

ମୃତ୍ୟୁଦଣ୍ଡ ଦିଅ ବୋଲି ଉଠୁଥିଲେ ଦୁର୍ନିବାର ସ୍ୱର
ଦୟା , କ୍ଷମା , କୋମଳତା ତୁମ ଯୋଗୁଁ ହେବ ଛାରଖାର | -୬

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

"ଆଜୀବନ କାରା ଦିଅ - ନରହତ୍ୟା ପଶୁତ୍ଵାଚରଣ,"
କହୁଛି ମୁଁ , ଶୁଣେ କିଏ ? ମର ଆଶ୍ରି ଶ୍ରୀହରି ଚରଣ |        -୭

## ଲୁହାର କି ସୁନାର ପିଞ୍ଜୁରୀ, ସେଥିରେ କି ଯାଏ ? -୪୪

ଦେହ ତ ଦହନ ଯୋଗ୍ୟ, ଅଗ୍ନି-ଶିଖା ତାର ଶେଷ ଗତି,
ସୁନ୍ଦର, କୁତ୍ସିତ, ରାଜା, ଭିକ୍ଷୁ, ମହାଜ୍ଞାନୀ, ମୂଢ଼ମତି,    -1

ସମସ୍ତେ ଆହୂତି ହେବେ ନିଶ୍ଚେ ଦିନେ ଶ୍ମଶାନ ମନ୍ଦିରେ,
ଧର୍ମ, ପ୍ରେମ, ଶୁଦ୍ଧ ଭାବ ଥିଲେ ସଙ୍ଗେ ଯିବେ ଆର ପୁରେ!! -2

ଶାନ୍ତ ଶିବାଳୟ! ଘେନ ଆଜ ହୁଁ ମୋ ବିନମ୍ର ପ୍ରନତି,
ନିରବେ ଗାଇବି ଦିନେ ତୁମ କୋଳେ ସତ୍ୟ, ଧର୍ମ ଗୀତି ||   -3

ଆତ୍ମୀୟ-ବନ୍ଧୁ-ବାନ୍ଧବ, ମୋ ଛିଣ୍ଡା କବିତା ଖାତା ପୃଷ୍ଠା,
ଚିତାଗ୍ନିରେ କର ସ୍ଵଧା, ଗାଇବି ମୁଁ ସେଇଠୁ କବିତା ||        -4

## ଏବଂବିଧ ସଂସାର {କାଳ୍ପନିକ}                    -୪୫

କିଛି ଥାଉ ସନ୍ତକ              ହଜିଲା ଶରଧାର |
କି ଅର୍ଥ ବିଳପିଲେ   ଈକ୍ଷଣୁ କ୍ଷରି ନୀର ?
ହସେ ତନୁ ଆନନ   ବେନି ନୟନ ଆଗେ |
(ହେଲେ)
ସେ ପୂତ ଆତ୍ମୀୟତା        ଆଉ ତ ନାହିଁ ଭାଗ୍ୟେ |
ଏ ଭାବେ ଚାଲି ଅଛି        ସଂସାର ପଥେ ତାର |

ବାଣୀପୁତ୍ର ଲଲାଟେନ୍ଦୁ କବିଙ୍କ ରଚିତ ଏହି ଲେଖାଗୁଡ଼ିକ ଉପରେ ମତାମତ କାମ୍ୟ

ସଞ୍ଚି ପୁଣ୍ୟ ପସରା, ବୁହାଇ ଅଶ୍ରୁ ଧାରା
ଭିଜାଏ ସିନା ନର ତୁଚ୍ଛା କପୋଳ, ଉର ||
କିଏ ପାରିବ କହି କେତେ କାଳ ଏ ମହୀ-
ତଳପେ ଲାଗିଥିବ ମିଥ୍ୟା-ମାୟା ଦୁଷ୍କର !!